# କଳ୍ପଲତା

( ପ୍ରାଚୀନ ଓଡ଼ିଆ କାବ୍ୟ )

କବି-ଅର୍ଜୁନ ଦାସ

( ଖ୍ରୀ: ଅ: ୧୫୨୦-୧୫୩୦ )

ସଂପାଦକ

**ଶ୍ରୀ କେଦାରନାଥ ମହାପାତ୍ର**

ବି. ଏ. (ଅନର୍ସ) ଡି. ଇଡି.

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ

ସଂରକ୍ଷକ,

ଭୁବନେଶ୍ୱର

ଓଡ଼ିଶା ସରକାରଙ୍କ ଶିକ୍ଷାବିଭାଗ

ଦ୍ୱାରା

ପ୍ରକାଶିତ

---

ମୁଦ୍ରାକର :—

ଶ୍ରୀ ପ୍ରସନ୍ନକୁମାର ମହାପାତ୍ର

ବି. ଏ. (ଅନର୍ସ)

ଶ୍ରୀ ଶାରଦା ପ୍ରେସ,

ଭୁବନେଶ୍ୱର-୨

ପ୍ରଥମ ମୁଦ୍ରଣ—୧୦୦୦

୧୯୬୧

---

ମୂଲ୍ୟ :-ଟ ୧. ୨୫ ନୂ. ପ.

# KALPA LATA

## ( An Old Oriya Kavya )

BY


***Poet Arjuna Dasa***

( C. 1520 - 1530 A.D. )



Edited by :—

**Sri K. N. Mahapatra,** B.A.(Hons)D.Ed.
Curator,
*Orissa State Museum,*
BHUBANESWAR.

# ମୁଖବନ୍ଧ

ଆଜକୁ ପ୍ରାୟ ତିନିଶବର୍ଷ ପୂର୍ବେ ଅଧୁନା ଲୁପ୍ତ 'ପ୍ରାଚୀ-ସମିତି' ଦ୍ୱାରା କବି ଅର୍ଜୁନ ଦାସଙ୍କ 'ରାମବିଭା' କାବ୍ୟ ସମ୍ମାନାସ୍ପଦ ଅଧ୍ୟାପକ ଡକ୍ଟର ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମୁଖବନ୍ଧ ସହ ପ୍ରକାଶିତ ହୋଇଥିଲା । ସେତେବେଳେ ବା ତତ୍ପରେ କବିଙ୍କ ରଚିତ 'କଳ୍ପଲତା' କାବ୍ୟର କୌଣସି ସୂଚନା ମିଳି ନଥିଲା । ୧୯୫୮ ମସିହାରେ ଭୁବନେଶ୍ୱରସ୍ଥ ରାଜ୍ୟ ସଂଗ୍ରହାଳୟର ପୋଥି-ଭଣ୍ଡାର ପାଇଁ ଖୋର୍ଦ୍ଧା ନିକଟବର୍ତ୍ତୀ ହଳଦିଆ ଗଡ଼ର ଜମିଦାରଙ୍କ-ଠାରୁ ବହୁ ଉପାଦେୟ ପ୍ରାଚୀନ ଗ୍ରନ୍ଥ କ୍ରୟ କରାଯାଇଥିଲା । ସେଥିମଧ୍ୟରୁ କବି ଅର୍ଜୁନ ଦାସଙ୍କ 'କଳ୍ପଲତା' କାବ୍ୟ ଏକତମ । ଏହା ପ୍ରାଚୀନ ସାହିତ୍ୟର ଏକ ଉଜ୍ଜ୍ୱଳ ରତ୍ନ । ଆଶା ଓ ଆନନ୍ଦର ବିଷୟ ଯେ ଭାରତ ସରକାରଙ୍କ 'ଆଧୁନିକ ଭାରତୀୟ ଭାଷା ସମୂହର ଅଭିବୃଦ୍ଧି ଯୋଜନା' Development of Modern Indian Languages' ଅନୁଯାୟୀ ରାଜ୍ୟ ସରକାରଙ୍କ ଦ୍ୱାରା ଅନ୍ୟ କେତେଟି ପ୍ରାଚୀନ କାବ୍ୟ ସହ ଉକ୍ତ ଗ୍ରନ୍ଥଟି ପ୍ରକାଶାଲୋକ ଲାଭ କରୁଛି । ଏହା ସମ୍ବନ୍ଧରେ ମୋର ସହକାରୀ ପଣ୍ଡିତ ଶ୍ରୀ ନୀଳମଣି ମିଶ୍ର ପ୍ରଥମେ ଏକ ପ୍ରବନ୍ଧ ପ୍ରକାଶ କରି (୧) ଏ ସଂପର୍କରେ ଅଧିକ ଆଲୋଚ-ନାର ପଥ ସୁଗମ କରିଥିବାରୁ ଧନ୍ୟବାଦାର୍ହ ।

---

୧ । 'କଳ୍ପଲତା' ଓ କବି ଅର୍ଜୁନ ଦାସ, ନବଜୀବନ, ୩ୟ ବର୍ଷ, ଷଷ୍ଠ ସଂଖ୍ୟା ପୃ ୪୧୮-୪୨୩,

**କବିଙ୍କ ସମୟ ନିରୂପଣ**—'ରାମବିଭା' କାବ୍ୟର ମୁଖବନ୍ଧରେ ଅଧ୍ୟାପକ ଡକ୍ଟର ଅର୍ତ୍ତବଲ୍ଲଭ ମହାନ୍ତି ଅର୍ଜୁନ ଦାସଙ୍କୁ ପଞ୍ଚଦଶ ଶତାବ୍ଦୀର ଶେଷ ଭାଗ ଓ ଷୋଡ଼ଶ ଶତାବ୍ଦୀର ଆଦ୍ୟ ଭାଗର କବିରୂପେ ସ୍ଥିର କରିଥିଲେ (୨) ବହୁ ପ୍ରାଚୀନ ଗ୍ରନ୍ଥର ଆଲୋଚକ ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ସ୍ୱୀୟ ଗ୍ରନ୍ଥରେ (୩) କବି ଅର୍ଜୁନ ଦାସଙ୍କୁ ଗଜପତି ପ୍ରତାପରୁଦ୍ରଙ୍କ ପୂର୍ବବର୍ତ୍ତୀରୂପେ ଗ୍ରହଣ କରିଛନ୍ତି । ପୂର୍ବୋକ୍ତ ଦୁଇ ପ୍ରସିଦ୍ଧ ଆଲୋଚକଙ୍କ ଦ୍ୱାରା କବିଙ୍କ ସମୟ ନିରୂପଣ ଅଭ୍ରାନ୍ତ ନୁହେଁ । କାରଣ କବି ଅର୍ଜୁନ ଦାସ ସ୍ୱୀୟ ଗ୍ରନ୍ଥ ଦ୍ୱୟରେ ନିଜକୁ ଶିଶୁ ଆଖ୍ୟାରେ ଅଭିହିତ କରି ଗୌରବ ଅନୁଭବ କରିଛନ୍ତି । ଉତ୍କଳର ସୁପ୍ରସିଦ୍ଧ ପଞ୍ଚସଖାଙ୍କ ମଧ୍ୟରେ ଏକତମ ମହାପୁରୁଷ ଅନନ୍ତ ଦାସ **ଶିଶୁ** ସମ୍ପ୍ରଦାୟର ପ୍ରତିଷ୍ଠାତା । ସେ ମହାପ୍ରଭୁ ଶ୍ରୀ ଚୈତନ୍ୟଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିବାରୁ ୧୫୧୦ ଖ୍ରୀଷ୍ଟାବ୍ଦରେ ଶ୍ରୀଚୈତନ୍ୟଙ୍କ ନୀଳାଚଳ ଆଗମନ ପରେ ଶିଶୁ-ସମ୍ପ୍ରଦାୟ ପ୍ରତିଷ୍ଠିତ ହୋଇଥିବା ସୁନିଶ୍ଚିତ । ଯଦି **ଶିଶୁ** କବି ଅର୍ଜୁନ ଦାସଙ୍କୁ **ଶିଶୁ** ଅନନ୍ତ ଦାସଙ୍କ ଶିଷ୍ୟରୂପେ ଗ୍ରହଣ କରାଯାଏ, ତାହା ହେଲେ ତାଙ୍କର ଶିଶୁ' ଦୀକ୍ଷା ଗ୍ରହଣ କାଳ ୧୫୧୦ରୁ ନିଶ୍ଚୟ ପରବର୍ତ୍ତୀ । ଏ ସଂପର୍କରେ ମହାପୁରୁଷ ଶିଶୁ ଅନନ୍ତ ଦାସ ଓ ଆଲୋଚ୍ୟ କାବ୍ୟ ପ୍ରଣେତା ଶିଶୁ ଅର୍ଜୁନ ଦାସଙ୍କ ରଚନାବଳୀ ପ୍ରଣିଧାନଯୋଗ୍ୟ ।

ମିଜଜିୟମ ପୋଥି ଭଣ୍ଡାରରେ ମହାପୁରୁଷ ଅନନ୍ତ ଦାସଙ୍କ ରଚିତ କେତେକ କ୍ଷୁଦ୍ର ଗ୍ରନ୍ଥ ତାଳପତ୍ର ପୋଥି ଆକାରରେ

---

୨ । ରାମବିଭା (ପ୍ରାଚୀ ସଂସ୍କରଣ) ମୁଖବନ୍ଧ ୮/,

୩ । 'ଓଡ଼ିଆ ସାହିତ୍ୟର ପରିଚୟ' ପ୍ରଥମ ଖଣ୍ଡ, ପୃ ୧୭୬ ।

ସଂରକ୍ଷିତ । ସେଗୁଡ଼ିକରୁ କେତେକ ପ୍ରମାଣୋପଯୋଗୀ ପଂକ୍ତି ନିମ୍ନରେ ଉଦ୍ଧାର କରାଗଲା ।

(କ) ଶ୍ରୀ ତେ ଅନନ୍ତ ବ୍ରହ୍ମାଣ୍ଡେ ହେଲେ ଉକତ
ଶରଣାଗତ ଅନାଦିଙ୍କ ଚରଣେ ମାଗଇ **ଶିଶୁ** ଅନନ୍ତ ।
'ଅର୍ଥ ତାରେଣୀ' ଗ୍ରନ୍ଥ ଆରମ୍ଭ ।

(ଖ) ସେତ କଳା କଥା ଯେ ଅନନ୍ତ **ଶିଶୁ** କହି
ବିଚାରି ବୁଝିଲେ ଏଥି କିଛି ଧନ୍ଦା ନାହିଁ ।
ଶ୍ରୀ ଅନନ୍ତ ଦାସଙ୍କ 'ପ୍ରଶ୍ନୋତ୍ତର', ଶେଷାଂଶ ।

(ଗ) ବିନ୍ଦୁ ଅକ୍ଷରୁ ହୋଇଲା ଅଶେଷ
**ଶିଶୁ** ଅନନ୍ତ ସେହିଠାରୁ ଆସ ।
'ଅଣାକାର ଶବଦ' ଗ୍ରନ୍ଥର ଶେଷାଂଶ ।

(ଘ) ଭଣଇ **ଶିଶୁ** ଅନନ୍ତ ସଂପୂର୍ଣ୍ଣରେ ବାଣୀ
ଦ୍ୱାଦଶ ପଟ୍ଟଳ ଶେଷ କରି ଚକ୍ରପାଣି ।
'ଭକ୍ତି ମୁକ୍ତି ଦାୟକ ଗୀତା' ପୁସ୍ତକର ଶେଷାଂଶ ।

ବର୍ତ୍ତମାନ କବି ଅର୍ଜ୍ଜୁନ ଦାସଙ୍କ **ଶିଶୁ** ଆଖ୍ୟା ସମ୍ବନ୍ଧରେ ତାଙ୍କ ଗ୍ରନ୍ଥଦ୍ୱୟରୁ ବାଛିଲା ଉଦ୍ଧୃତ ସାହାଯ୍ୟରେ ବିଚାର କରାଯାଉ ।

## ରାମ ବିଭା

୧ । 'ଆଚମନ ଅବକାଶ ଦର୍ଶନ କରି
**ଶିଶୁ** ଅରଜୁନ କରି ଅଛଇ ଯୋଡ଼' (ପଞ୍ଚମ ଛାନ୍ଦର ଭଣିତା)

# କଳ୍ପଲତା

(କ) 'ସେ ଜଗନ୍ନାଥ ପଦ୍ମପାଦ ଦାସ,
ମଧୁପ **ଶିଶୁ** ଅରଜୁନ ଦାସ' (ଦ୍ୱିତୀୟ ଛାନ୍ଦ, ୧୦ମ ପଦ)

(ଖ) "ଯାର ପରିବାର ଜଗତ ଜନ ।
ତାର ଶରଣ **ଶିଶୁ** ଅରଜୁନ ।
(ଦ୍ୱିତୀୟ ଛାନ୍ଦର ଶେଷାଂଶ)

(ଗ) ଆରତ ତାରଣ ଜଗନ୍ନାଥ ନୀଳଗିରି ନରେନ୍ଦ୍ର
ବୋଲଇ **ଶିଶୁ** ଅରଜୁନ ସଂସାର ତମିର ଚନ୍ଦ୍ର ।
(ତୃତୀୟ ଛାନ୍ଦ ଭଣିତା)

(ଘ) ଅଭୟେ ଦାଇନୀ ଭୁଜ ବେନି ସୁରଗଣ କଳ୍ପତରୁ
ବୋଲଇ **ଶିଶୁ** ଅରଜୁନ ଆଶା ବିଶ୍ରାମ ମେରୁ ।
(ପଞ୍ଚମ ଛାନ୍ଦ ଭଣିତା)

(ଙ) କମଳିଣୀ ପତି ଜଗନ୍ନାଥ ଚରଣ
**ଶିଶୁ** ଅରଜୁନ ତହିଁ ପଶେ ଶରଣ ।
(ସପ୍ତମ ଛାନ୍ଦ ଭଣିତା)

(ଚ) ବାଳଗଣ୍ଡି ପରିବେଶ, ରହିଣ ନବ ଦିବସ
**ଶିଶୁ** ଅରଜୁନ ଦାସ ମନେ ଉଲ୍ଲାସ ଯେ ।
(ଅଷ୍ଟମ ଛାନ୍ଦ)

'ରାମ ବିଭା' କାବ୍ୟର ବାର ଛାନ୍ଦ ମଧ୍ୟରୁ କେବଳ ଗୋଟିଏ ଛାନ୍ଦର ଶେଷରେ 'ଶିଶୁ' ପଦର ବ୍ୟବହାର ଥିବା ସ୍ଥଳେ 'କଳ୍ପଲତା'

କାବ୍ୟର ତେତେଶିଟି ଛାନ୍ଦ ମଧ୍ୟରୁ ଦ୍ୱିତୀୟ ଛାନ୍ଦରେ ଦଶମ ପଦ ଓ ଶେଷରେ ଓ ଅନ୍ୟ ଗୋଟିଏ ଛାନ୍ଦର ଶେଷ ପଂକ୍ତିରେ 'ଶିଶୁ' ପଦବୀର ବ୍ୟବହାର ପରିଦୃଷ୍ଟ ହୁଏ । 'କଳ୍ପଲତା' 'ରାମ ବିହାର' ପରବର୍ତ୍ତୀ ରଚନା । କାରଣ 'କଳ୍ପଲତା'ର ନବମ ଛାନ୍ଦଟିକୁ ରାମବିଭା ପ୍ରଥମ ଛାନ୍ଦ ବାଣୀରେ ଗାଇବା ପାଇଁ କବି ନିର୍ଦ୍ଦେଶ ଦେଇଛନ୍ତି । ସମ୍ଭବତଃ 'ରାମବିଭା'ର ରଚନା ପରେ ଶିଶୁ ସମ୍ପ୍ରଦାୟରେ କବିଙ୍କ ପ୍ରାଧାନ୍ୟ ଓ ଗୌରବ ବୃଦ୍ଧି ଲାଭ କରିଥିବାରୁ ସେ ସ୍ୱୀୟ 'କଳ୍ପଲତା'ରେ 'ଶିଶୁ' ପଦବୀର ଅଧିକ ପ୍ରୟୋଗ କରିଛନ୍ତି ।

କବି ଈଶ୍ୱର ଦାସ ପ୍ରଣୀତ 'ଚୈତନ୍ୟ ଭାଗବତ' ଗ୍ରନ୍ଥ ପାଠରୁ ଜଣାଯାଏ ଯେ ମହାପୁରୁଷ ଅନନ୍ତ ଦାସ ଯୋଗବଳରେ ଶିଶୁରୂପ ଧାରଣକରି ମହାଲକ୍ଷ୍ମୀଙ୍କ କୋଳ ମଣ୍ଡନ କରିଥିବାରୁ ଶ୍ରୀଜଗନ୍ନାଥ ମହାପ୍ରଭୁ ପ୍ରସନ୍ନ ହୋଇ ତାଙ୍କୁ ଶିଶୁ ଉପାଧି ପ୍ରଦାନ କରିଥିଲେ । (୪) ସେହିଦିନଠାରୁ ସେ ଶିଶୁ ଅନନ୍ତ ନାମରେ ଖ୍ୟାତିଲାଭ କଲେ । ତାଙ୍କ ସମ୍ପ୍ରଦାୟର ଭକ୍ତ କବିମାନେ ଶିଶୁ ପଦବୀ ଧାରଣ କରି ଗୌରବ ବୋଧ କରୁଥିଲେ । ଏ ସମ୍ପ୍ରଦାୟର କବି-ମାନଙ୍କ ମଧ୍ୟରେ ଆଲୋଚ୍ୟ ଶିଶୁ ଅର୍ଜୁନ ଦାସ, ବିରାଟ ରାସଗ୍ରନ୍ଥ ପ୍ରଣେତା ଶିଶୁ ବନମାଳୀ ଦାସ, 'ଉଷାଭିଳାଷ' କାବ୍ୟକାର ଶିଶୁ ଶଙ୍କର ଦାସ, 'ଶଶିସେଣା'ର ରଚୟିତା ଶିଶୁ ପ୍ରତାପ ରାୟ 'ଅଶ୍ୱମେଧଯାଗ'ର କବି ଶିଶୁ ଗୁଣନିଧି ଦାସଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ମହାପୁରୁଷ ଅନନ୍ତ ଦାସ ୧୫୧୦ରୁ ୧୫୧୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଶିଶୁ ସମ୍ପ୍ରଦାୟ ପ୍ରତିଷ୍ଠା କରିଥିବାର ଆପାତତଃ ସିଦ୍ଧାନ୍ତ

---

୪ । ରାମ୍ବ୍ରଷା ରଜତ ଜୟନ୍ତୀ ଗ୍ରନ୍ଥ, ପୃ ୧୪୫-୧୪୬ ।

କରାଗଲେ ତାଙ୍କର ଶିଷ୍ୟ ବା ସମ୍ପ୍ରଦାୟଭୁକ୍ତ କବି ଶିଶୁ ଅର୍ଜୁନ ଦାସଙ୍କୁ ୧୫୧୫ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ କବି ରୂପେ ଗ୍ରହଣ କରିବା ସର୍ବଥା ଯୁକ୍ତି ସଙ୍ଗତ ।

ତାଙ୍କ ଆବିର୍ଭାବ କାଳର ପରବର୍ତ୍ତୀ ସୀମାରେଖା କେତେକ ପରୋକ୍ଷ ପ୍ରମାଣ ବଳରେ ସ୍ଥିର କରି ଯାଇ ପାରେ । ନିମ୍ନଲିଖିତ କବିମାନେ ସ୍ୱ ସ୍ୱ କୃତିଗୁଡ଼ିକରେ 'ରାମବିଭା'ର ବିଭିନ୍ନ ଛାନ୍ଦକୁ ବାଣୀ ବା ବୃତ୍ତରୂପେ ଗ୍ରହଣ କରିଥିବାରୁ ସେ ନିଶ୍ଚୟ ସେମାନଙ୍କର ପୂର୍ବବର୍ତ୍ତୀ ।

୧ । ଧନଞ୍ଜୟ ଭଞ୍ଜ (୧୬୭୭-୧୭୦୧) ସ୍ୱୀୟ 'ରଘୁନାଥବିଳାସ'ର ଷୋଡ଼ଶ ଛାନ୍ଦକୁ ରାମବିଭା ପଞ୍ଚମ ଛାନ୍ଦ 'ମନୋହର ଭାଇ ଜନକ ରାଜ୍ୟ' ବାଣୀରେ ଗାଇବା ପାଇଁ ନିର୍ଦ୍ଦେଶ ଦେଇ-ଥିବାରୁ ଅର୍ଜୁନ ଦାସ ୧୬୭୭ର ପୂର୍ବବର୍ତ୍ତୀ ।

୨ । ଧନଞ୍ଜୟ ଭଞ୍ଜଙ୍କ ପୂର୍ବବର୍ତ୍ତୀ କାର୍ତ୍ତିକ ଦାସ ନିଜ କୃତ 'ରୁକ୍ମିଣୀବିଭା'ର ଅଷ୍ଟମ ଛାନ୍ଦକୁ 'ରାମବିଭା' ଷଷ୍ଠ ଛାନ୍ଦ ବାଣୀରେ ଗାଇବାକୁ ନିର୍ଦ୍ଦେଶ ଦେଇଛନ୍ତି । ତାଙ୍କର ସମୟ ନିଶ୍ଚିତରୂପେ ଜଣାନଗଲେ ମଧ୍ୟ ତାଙ୍କୁ ୧୭୦୦ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀରୂପେ ଗ୍ରହଣ କରାଯାଇପାରେ ।

୩ । ଏ ସମ୍ପର୍କରେ କବି ବିଷ୍ଣୁ ଦାସଙ୍କ ନୂତନ ପ୍ରକାଶିତ 'ପ୍ରେମ-ଲୋଚନା' କାବ୍ୟ ଉଲ୍ଲେଖଯୋଗ୍ୟ । ଏହାର ପଞ୍ଚମ ଛାନ୍ଦକୁ 'ମାରକଣ୍ଡ ଋଷି କହେ' ବାଣୀରେ ଗାଇବା ପାଇଁ କବି ନିର୍ଦ୍ଦେଶ ଦେଇଛନ୍ତି । ଏହା 'ରାମବିଭା' ଷଷ୍ଠ ଛାନ୍ଦର ପ୍ରଥମ ପଂକ୍ତି । କବି ବିଷ୍ଣୁ ଦାସ ୧୫୭୦ରୁ ୧୬୧୦ ଖ୍ରୀଷ୍ଟାବ୍ଦ

ମଧ୍ୟରେ ସ୍ୱଚ୍ଛନ୍ଦମାନ ରଚନା କରିଥିବା ନିଶ୍ଚିତରୂପେ ଜଣାଯାଏ । ତେଣୁ କବି ଅର୍ଜୁନ ଦାସ ୧୫୭୦ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ ।

୪ । କବି ନରସିଂହ ସେଣ ସ୍ତ୍ରୀଯ୍ୟ 'ପଦ୍ମମେଳା' କାବ୍ୟର ପଞ୍ଚମ ଛାନ୍ଦକୁ 'ରାମବିଭା' ବୃତ୍ତୀୟ ଛାନ୍ଦ ବାଣୀରେ ଗାଇବାପାଇଁ ନିର୍ଦ୍ଦେଶ ଦେଇଛନ୍ତି । ନରସିଂହଙ୍କର ୧୫୪୦ ଖ୍ରୀଷ୍ଟାବ୍ଦ ପୂର୍ବରୁ 'ପଦ୍ମମେଳା' ରଚନା କରିଥିବା ବର୍ତ୍ତମାନ ନିଶ୍ଚିତରୂପେ ଜଣାଯାଏ । ତେଣୁ ତାଙ୍କ ପୂର୍ବବର୍ତ୍ତୀ କବି ଅର୍ଜୁନ ଦାସଙ୍କ ଆବିର୍ଭାବ କାଳ ୧୫୨୦ରୁ ୧୫୩୦ ଖ୍ରୀ: ଅ: ମଧ୍ୟରେ ନିର୍ବିବାଦରେ ନିର୍ଦ୍ଧାରିତ ହୋଇପାରେ ।

**ବିଷୟବସ୍ତୁ**—'କଳ୍ପଲତା' ପ୍ରାଚୀନ ଓଡ଼ିଆ ଭାଷାରେ ବିରଚିତ ସର୍ବ ପ୍ରଥମ କାଳ୍ପନିକ କାବ୍ୟ । ତେଣୁ ଓଡ଼ିଆ ସାହିତ୍ୟ ଇତିହାସରେ ଏହାର ଏକ ବିଶିଷ୍ଟ ସ୍ଥାନ ଥିବାରୁ ତୁଳନାତ୍ମକ ଆଲୋଚନା ନିମିତ୍ତ ଗ୍ରନ୍ଥର ବିଷୟବସ୍ତୁ ଅତି ସଂକ୍ଷିପ୍ତ ଭାବରେ ନିମ୍ନରେ ପ୍ରଦାନ କରାଗଲା ।

ଗ୍ରନ୍ଥ ଆରମ୍ଭରେ କବି ଶ୍ରୀଜଗନ୍ନାଥ ଦେବଙ୍କ ସ୍ନାନ ପୂର୍ଣ୍ଣିମା ଯାତ୍ରା ବର୍ଣ୍ଣନା କରି ବିଷୟବସ୍ତୁର ଅବତାରଣା କରିଛନ୍ତି । ବସନ୍ତକ ନାମକ ଗନ୍ଧର୍ବ ଓ ସୁରେଖା ନାମ୍ନୀ ଅପ୍ସରା ମଧ୍ୟରେ ପ୍ରୀତି ଜାତ ହୋଇ ଉତ୍ତରୋତ୍ତର ବୃଦ୍ଧି ଲାଭ କଲା । ଦିନେ ଉଭୟେ କେଳି କରୁଥିବା ସମୟରେ ଇନ୍ଦ୍ର ଓ ଗୋବିନ୍ଦଙ୍କ ସଭାରେ ନୃତ୍ୟ କରିବାପାଇଁ ସୁରେଖାକୁ ଇନ୍ଦ୍ରଙ୍କ ନିକଟରୁ ଡକରା ଆସିଲା । ଇନ୍ଦ୍ରଙ୍କ ଆଦେଶ ପାଇ ବିକଳିତ ମନ ଦୁଃଖରେ ସୁରେଖା ବସନ୍ତକଙ୍କଠାରୁ ବିଦାୟ ନେଇ ଦେବସଭାକୁ ନୃତ୍ୟ କରିବାପାଇଁ ଗଲା । ବସନ୍ତକଙ୍କ

ପକ୍ଷେ ବିରହ ଦୁଃଖ ଅସହ୍ୟ ହେବାରୁ ସେ ନୃତ୍ୟସ୍ଥଳକୁ ଗମନ କଲା । ସେଠାରେ ବସନ୍ତକକୁ ଦେଖି ସୁରେଖା ଅନ୍ୟମନସ୍କା ହୋଇ ନୃତ୍ୟ ତ୍ୟାଗ କରିବାରୁ ଇନ୍ଦ୍ର କୋପାନ୍ୱିତ ହୋଇ ଉଭୟଙ୍କୁ ଅଭିଶାପ ପ୍ରଦାନ କଲେ । ପରେ ଗୋବିନ୍ଦଙ୍କ ଅନୁରୋଧରେ କ୍ରୋଧ ସମ୍ବରଣ କରି ଇନ୍ଦ୍ର ଉଭୟେ ମର୍ତ୍ତ୍ୟରେ ରାଜକୁମାର ଓ ରାଜ-କୁମାରୀ ରୂପେ ଜନ୍ମଲାଭ କରି କିଛିକାଳ ଦାମ୍ପତ୍ୟ ସୁଖ ଅନୁଭବ ପୂର୍ବକ ପୁନର୍ବାର ଦେବଲୋକକୁ ଫେରିଯିବେ ବୋଲି ବରପ୍ରଦାନ କଲେ ।

ଇନ୍ଦ୍ରଙ୍କ ଶାପାନୁସାରେ ବସନ୍ତକ ମହ୍ଲାଳ ଦେଶର ରାଜା ବିଦ୍ୟାବିନୋଦଙ୍କ ପୁତ୍ରରୂପେ ଜନ୍ମଲାଭ କରି ଅମରଶିଖର ନାମ ଧାରଣ କରିଥିଲେ । ତଦନୁଯାୟୀ ଅପ୍ସରା ସୁରେଖା କର୍ଣ୍ଣାଟ-ଦେଶର ରାଜା ଧର୍ମଧ୍ୱଜଙ୍କ କନ୍ୟା କଳ୍ପଲତା ରୂପେ ଜନ୍ମଗ୍ରହଣ କରିଥିଲେ । କ୍ରମଶଃ ଉଭୟେ ଯୌବନାବସ୍ଥାରେ ଉପନୀତ ହେଲେ । ଦିନେ ରାଜକୁମାରୀ କଳ୍ପଲତା ସ୍ୱପ୍ରିୟ ସଖୀ ମନ୍ତ୍ରୀ କୁମାରୀ ମଦନମଞ୍ଜରୀ ସହିତ କୃଷ୍ଣାବେଣୀ ନଦୀରେ ସ୍ନାନାନ୍ତେ ଶିବ ପୂଜା କରି ଯୋଗୀ ଜଙ୍ଗମଙ୍କ ନିକଟରେ ଉପସ୍ଥିତ ହୋଇଥିଲେ ଏବଂ ଜଙ୍ଗମଙ୍କ ହସ୍ତରେ ସ୍ୱଚିତ୍ରପଟ ପ୍ରଦାନ କରି ମହ୍ଲାଳଦେଶରେ ରାଜକୁମାର ଅମରଶିଖରଙ୍କୁ ଚୈତ୍ରପୂର୍ଣ୍ଣିମା ପୂର୍ବରୁ ଆଣି ଭେଟାଇବାକୁ ଅନୁରୋଧ କଲେ । ଜଙ୍ଗମ ଚିତ୍ରପଟ ନେଇଯିବା ପରେ ରାଜକୁମାରୀ ଅନ୍ତଃ-ପୁରକୁ ଫେରି ଆସିଲେ ।

ରାଜକୁମାର ଅମରଶିଖରେ ସ୍ୱପ୍ରିୟ ସଖା ମାଳତୀ ମଧୁକର ଆଗରେ ନିଜର ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କରି କଳ୍ପଲତା ବ୍ୟତୀତ ଅନ୍ୟ ରାଜକନ୍ୟା ବିବାହ କରିବାକୁ ପ୍ରତ୍ୟାଖ୍ୟାନ କଲେ ।

ରାଜା ବିଦ୍ୟାବିନୋଦ ସ୍ୱୟଂବର ରାଜ୍ୟାଭିଷେକ ସମାପନାନ୍ତେ ଏକ ରୂପବତୀ ରାଜକୁମାରୀ ସହିତ ତାଙ୍କର ବିବାହ ସମାଧାନ ପାଇଁ ପ୍ରସ୍ତାବ କଲେ । କିନ୍ତୁ ରାଜକୁମାର ମନ୍ତ୍ରୀପୁତ୍ର ସହ ଗୁପ୍ତଭାବରେ ବୈଦୂର୍ଯ୍ୟ ଗିରିକୁ ଯାଇ ସେଠାରେ ସର୍ବଜ୍ଞାନୀ ଯୋଗୀ ସର୍ବେଶ୍ୱରଙ୍କୁ ଭେଟିଥିଲେ । ସେହି ସ୍ଥାନରେ ସେ କୁମାରୀ କଳ୍ପଲତାର ଚିତ୍ରପଟ ଧରି ଆସିଥିବା ଯୋଗୀ ଜଙ୍ଗମଙ୍କ ସାକ୍ଷାତ ଲାଭକଲେ ଏବଂ କୁମାରୀର ପ୍ରତିଜ୍ଞା କଥା ଶୁଣି ଯୋଗୀ ସର୍ବେଶ୍ୱରଙ୍କଠାରୁ ବିଭୂତି ଗ୍ରହଣ ଓ ମୃତ୍ୟୁଞ୍ଜୟ ମନ୍ତ୍ର ଶିକ୍ଷାକରି ଛଦ୍ମବେଶରେ ମନ୍ତ୍ରୀପୁତ୍ର ଓ ଯୋଗୀ ଜଙ୍ଗମଙ୍କ ସହ କର୍ଣ୍ଣାଟ ଦେଶକୁ ଯାତ୍ରା କଲେ ।

ଜଙ୍ଗମ ହସ୍ତରେ ଚିତ୍ରପଟ ପଠାଇ କନ୍ୟାନ୍ତଃପୁରରେ ରାଜ-କୁମାରୀ କଳ୍ପଲତା ବିରହବେଦନାରେ ପୀଡିତା ହେବାରୁ ରାଣୀ ତାହା ଜାଣି ପାରି ରାଜାଙ୍କ ଆଗରେ ବର୍ଣ୍ଣନା କଲେ । ତତ୍ପରେ ରାଜା ଧର୍ମଧ୍ୱଜ ରାଜକୁମାର ପ୍ରତାପ ପଞ୍ଚାନନଙ୍କୁ ଜେମାପାଇଁ ଉପଯୁକ୍ତ ବର ଅନ୍ୱେଷଣ ନିମିତ୍ତ ପ୍ରେରଣ କଲେ । ବହୁ ଅନ୍ୱେଷଣ ପରେ ଚୈତ୍ର ଦେଶର ରାଜକୁମାର ଅବନୀତିଳକଙ୍କୁ ବରରୂପେ ମନୋନୀତ କରି ପ୍ରତାପ ପଞ୍ଚାନନ ସ୍ୱରାଜ୍ୟକୁ ଫେରି ଆସିଲେ । ବରର ରୂପ-ଗୁଣ ଶ୍ରବଣରେ ମୁଗ୍ଧ ହୋଇ ରାଜା କନ୍ୟାର ବିବାହପାଇଁ ଦିନ ଧାର୍ଯ୍ୟକଲେ ।

ବିବାହପାଇଁ ସମସ୍ତ ଆୟୋଜନ ଶେଷ ହେବା ପରେ ମିତ୍ର ରାଜାମାନଙ୍କୁ ବିବାହରେ ଯୋଗଦାନ ନିମିତ୍ତ ନିମନ୍ତ୍ରଣ କରାଗଲା । ବିବାହ ପୂର୍ବଦିନ ରାଣୀ କଳ୍ପଲତା ଆଗରେ ବରର ରୂପ ଗୁଣ ବିଷୟ ବର୍ଣ୍ଣନା କରିବାରୁ ରାଜକୁମାରୀ କୌଣସି ଉତ୍ତର ନ ଦେଇ ମନ ଦୁଃଖରେ ଅଧୋମୁଖୀ ହୋଇ ମାତାଙ୍କ ନିକଟରୁ ଚାଲିଗଲେ ।

ପରେ ସ୍ୱପକ୍ଷୀ ଅମରଶିଖର ନିକଟରେ ସ୍ୱପୂର୍ବ ଜନ୍ମ ବୃତ୍ତାନ୍ତ ଓ ଦୁଃଖ ବର୍ଣ୍ଣନା କରି ପଇଡ଼ପାଣି, କର୍ପୂର ଓ ଲେମ୍ବୁରସ ଦ୍ୱାରା ପ୍ରସ୍ତୁତ ବିଷ ଭକ୍ଷଣ କରି ଆତ୍ମହତ୍ୟା କଲେ । ରାତି ପାହିଲାବେଳକୁ ଦାସୀ ଓ ପରିଚାରୀମାନେ କନ୍ୟାକୁ କୋଇଲି ସ୍ନାନ କରିବାକୁ ଆସି ତାଙ୍କର ମୃତାବସ୍ଥା ଦେଖି ଅଧୀର ଭାବରେ ଉଚ୍ଚ ସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ । ଦାସୀମାନଙ୍କଠାରୁ କନ୍ୟାର ମୃତ୍ୟୁ ସମ୍ବାଦ ପାଇ ରାଣୀ ଓ ରାଜା ଅତ୍ୟନ୍ତ ଆକୁଳ ହୃଦୟରେ ରୋଦନ କଲେ । ଏ ଦୁଃସଂବାଦ ଶ୍ରବଣରେ ସମଗ୍ର ନଗର ଶୋକାଭିଭୂତ ଓ ବିବ୍ରତ ହୋଇ ପଡ଼ିଲା । ପରିଶେଷରେ ଏକ ଚନ୍ଦ୍ରଦୋଳ ମଧ୍ୟରେ ରାଜକୁମାରୀଙ୍କ ଶବକୁ ସୁସଜ୍ଜିତ କରି କୃଷ୍ଣାବେଣୀତଟବର୍ତ୍ତୀ ଚନ୍ଦନ ବନକୁ ନିଆଗଲା । କନ୍ୟାର ମୃତ୍ୟୁ ଘଟିବାରୁ ବିବାହ ପାଇଁ ଆଗତ ବର ଅବନତଳକ ମନ ଦୁଃଖରେ ସ୍ୱରାଜ୍ୟକୁ ଫେରି ଗଲେ । ଇତିମଧ୍ୟରେ ଛଦ୍ମବେଶୀ ରାଜକୁମାର ଅମରଶିଖର ଯୋଗୀ ଜଙ୍ଗମ ଓ ମନ୍ତ୍ରୀ ସୁତ ସହ ଉକ୍ତ ଚନ୍ଦନ ବନରେ ଉପଗତ ହୋଇ ଲୋକ ମୁଖରୁ ରାଜକୁମାରୀଙ୍କ ମରଣ ବୃତ୍ତାନ୍ତ ଶ୍ରବଣ କରି ଦୁଃଖାଭିଭୂତ ହେଲେ ।

ରାଜକନ୍ୟା କଳ୍ପଲତାର ମୃତ୍ୟୁ ସମ୍ବାଦରେ ବିବ୍ରତ ହୋଇ ପ୍ରଥମେ ଅମରଶିରେ ମୂର୍ଚ୍ଛା ଗଲେ । ପରେ ସଂଜ୍ଞା ଲାଭ କରି ରାଜକୁମାରୀକୁ ବିବାହ ଦେବାକୁ ପ୍ରତିଶ୍ରୁତି ଦେଲେ ସେ ତାଙ୍କୁ ବଞ୍ଚାଇ ଦେବେ ବୋଲି ପ୍ରତିଜ୍ଞା କଲେ । ତାଙ୍କର ପ୍ରତିଜ୍ଞା ବାଣୀ ଶୁଣି ଦାସ ଦାସୀ ପରିବାରବର୍ଗ ଆଶ୍ୱାସନା ଲାଭ କରି ରାଜାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇଲେ । ରାଜାଙ୍କଠାରୁ କନ୍ୟାଦାନର ସ୍ୱୀକୃତି ଲାଭ କରି ଅମରଶିଖର ମନ୍ତ୍ର ପ୍ରୟୋଗ ଦ୍ୱାରା ମୃତା କଳ୍ପଲତାଙ୍କୁ ବଞ୍ଚାଇ ଦେଲେ । କନ୍ୟାର ପୁନର୍ଜୀବନ ଲାଭରେ ରାଜପରିବାର

ଓ ପୁରଜନଙ୍କ ଆନନ୍ଦର ସୀମା ରହିଲ ନାହିଁ । ଅମରଶିଖର ରାଜାଙ୍କଠାରେ ସ୍ୱପରିଚୟ ପ୍ରଦାନ କରିବାରୁ ସେ ବିଶେଷ ସନ୍ତୋଷ ଲାଭ କଲେ । ପୁନର୍ଜୀବିତା ରାଜକୁମାରୀ ସ୍ୱସଖୀ ମଦନମଞ୍ଜରୀ ଠାରୁ ମୃତ୍ୟୁ ସଙ୍ଗେ ତାଙ୍କର ଶବକୁ ନଦୀକୂଳକୁ ଆନୟନ ଓ ଅମର ଶିଖରଙ୍କ ଦ୍ୱାରା ମନ୍ତ୍ରବଳରେ ତାଙ୍କର ପୁନର୍ଜୀବନ ଲାଭ ସମ୍ବାଦ ଶ୍ରବଣ କରି ବିଶେଷ ଆପ୍ୟାୟିତ ହେଲେ ଏବଂ ରାଜକୁମାରୀ ଅମରଶିଖରଙ୍କ ପାଦ ବନ୍ଦନା କରିଥିଲେ ।

ରାଜା ଧର୍ମଧ୍ୱଜ ସ୍ୱୀୟ କନ୍ୟା କଳ୍ପଲତାର ଅମରଶିଖରଙ୍କ ସହିତ ଓ ତାଙ୍କର ସଖୀ ମନ୍ତ୍ରୀକୁମାରୀ ମଦନମଞ୍ଜରୀର ଅମରଶିଖରଙ୍କ ସଖା ମାଳତୀ ମଧୁକର ସହିତ ବିବାହ ମହାସମାରୋହରେ ସମ୍ପନ୍ନ କରିଥିଲେ । ବରକନ୍ୟା କେତେକ ମାସ ଦାମ୍ପତ୍ୟ ସୁଖରେ କାଳଯାପନ କରିବା ପରେ ଦିନେ ଦୁହେଁ ଜଳକ୍ରୀଡ଼ା କରୁଥିବା ସମୟରେ ନାଗକନ୍ୟା ଅମରଶିଖରଙ୍କୁ ଅପହରଣ କରିନେଲେ । କୌଣସି ଉପାୟରେ ଅମରଶିଖରଙ୍କ ସନ୍ଧାନ ନ ପାଇବାରୁ କଳ୍ପଲତା ଅଗ୍ନିପ୍ରବେଶ ଦ୍ୱାରା ଆତ୍ମହତ୍ୟା କରିବାକୁ ସିଦ୍ଧାନ୍ତ କଲେ । କିନ୍ତୁ ପିତାଙ୍କ ଅନୁରୋଧରେ ଆଠଦିନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ସ୍ୱୀକୃତା ହେଲେ । ବହୁ ଦୁଃଖ କଷ୍ଟରେ ଆଠଦିନ କଟିଯିବା ପରେ, ରାଜକୁମାରୀ ଆତ୍ମହତ୍ୟା ପାଇଁ ଚିତାନଳ ପ୍ରସ୍ତୁତ କରାଇଲେ । ଚିତା ଜଳିବାରୁ ସ୍ନାନାନ୍ତେ ସେଥିରେ ଝାସ ଦେବା ପାଇଁ ମଧୁମଞ୍ଜରୀ ଓ ଅମରମଞ୍ଜରୀ ନାମ୍ନୀ ସଖୀ ଦ୍ୱୟ ତାଙ୍କୁ ଉପଦେଶ ଦେଲେ । ରାଜକୁମାରୀଙ୍କ ସହିତ ତାଙ୍କର ପ୍ରିୟ ସଖୀ ମଦନମଞ୍ଜରୀ ମଧ୍ୟ ଅଗ୍ନିରେ ପ୍ରବେଶ କରିବା ପାଇଁ ପ୍ରସ୍ତୁତ ହୋଇ ପୁଷ୍କରିଣୀ ତଟକୁ ଗମନକଲେ । କନ୍ୟାଦ୍ୱୟଙ୍କ ଆସନ୍ନ ମୃତ୍ୟୁ ବିଷୟ ଚିନ୍ତାକରି ରାଜା, ରାଣୀ, ମନ୍ତ୍ରୀ ଓ ପୁରଜନ ପାଇଁ କ୍ରନ୍ଦ-

ହୋଇଥିବା ନର ନାମ୍ନ ଶ୍ରେଦନ କଲେ । ଚିତାରୋହଣ ପୂର୍ବରୁ ସ୍ନାନ ନିମିତ୍ତ ପୁଷ୍କରିଣୀରେ ପ୍ରବେଶ କରନ୍ତେ ହଠାତ୍ ରାଜକୁମାର ଅମରଶିଖରଙ୍କ ଜୀବିତାବସ୍ଥାରେ ଜଳରେ ଆବିର୍ଭାବ ଦେଖି ସେଠାରେ ସମବେତ ଜନତା ଆନନ୍ଦରେ କୋଳାହଳ କଲେ ଏବଂ ରାଜାରାଣୀ ସ୍ୱୀୟ ଜାମାତାଙ୍କୁ ଆଲିଙ୍ଗନ ଓ ଆଶୀଷ ପ୍ରଦାନ କଲେ । ଏକ ସପ୍ତାହବ୍ୟାପୀ ଦୁଃଖଦାୟକ ବିଚ୍ଛେଦ ପରେ ପୁନର୍ବାର କୁମାର କୁମାରୀଙ୍କ ମଧ୍ୟରେ ମିଳନ ଉତ୍ସବ ମହାସମାରୋହରେ ଓ ବିପୁଳ ଆନନ୍ଦ କୋଳାହଳ ମଧ୍ୟରେ ପ୍ରତିପାଳିତ ହୋଇଥିଲା ।

**ଭକ୍ତକବି ଅର୍ଜ୍ଜୁନ ଦାସ**—ଅର୍ଜ୍ଜୁନ ଦାସଙ୍କ କବିତ୍ୱ ଉଚ୍ଚକୋଟୀର ନ ହେଲେ ମଧ୍ୟ ତାଙ୍କର କାବ୍ୟ ଦୁଇଟିର ଭାଷା ସରଳ, ଲଳିତ, ସାବଲୀଳ ଓ ସ୍ୱତଃସ୍ଫୂର୍ତ୍ତି । ତେଣୁ ତାଙ୍କ ରଚନା ପାଠରେ ପାଠକର ହୃଦୟରେ ବିମଳ ଆନନ୍ଦ ଓ ଆଗ୍ରହ ଜାତ ହୁଏ । ସେ ଏକାଧାରରେ ଜଣେ କବି ଓ ଜଗନ୍ନାଥଙ୍କ ପରମ ଭକ୍ତ ଥିଲେ । ଓଡ଼ିଶାର ପ୍ରଭୁ ଜଗନ୍ନାଥଙ୍କ ମହିମାରେ କବିଙ୍କ ଅଗାଧ ବିଶ୍ୱାସ ତାଙ୍କ ରଚନାର ନାନା ସ୍ଥାନରେ ଆତ୍ମପ୍ରକାଶ କରିଛି । ସେଥିରୁ କେତେକ ପଂକ୍ତି ନିମ୍ନରେ ଉଦ୍ଧାର କରାଗଲା ।

## ରାମବିଭା

'ବଡ଼ଅ ନଗି ହୁଅନ୍ତି ନୀଳଗିରିବାସ
ଶିରେ କରଯୋଡ଼ି ଭଣଇ ଅରଜୁନ ଦାସ ହେ' (ପ୍ରଥମ ଛାନ୍ଦ)
'ସେହି ପଦ୍ମତେ ନୃଗଛାଲ ପାଡ଼ି
ବସି ଅର୍ଜୁନ ଦାସ ଗୋଡ଼ମାଡ଼ି' (ଦ୍ୱିତୀୟ ଛାନ୍ଦ)

'ବୋଲେ ଅରଜୁନ ଭକ୍ତଜନେ ଭଣ ରାମରସ
ସଂସାରସାଗରେ ପଶିଲେ ନ ଲଗେ ସକଳ ଦୋଷ'
(ତୃତୀୟ ଛାନ୍ଦ)

'ଆଗମନ ଅବକାଶ ଦର୍ଶନ କର
ଶିଶୁ ଅରଜୁନ କର ଅଞ୍ଜଳି ଯୋଡ଼ି' (ପଞ୍ଚମ ଛାନ୍ଦ)
'ଆମ୍ଭେତ ଯେମନ୍ତ ପ୍ରାୟେକ ମଣ୍ଡୁ ଶ୍ରୀରାମ ପୁରୁଷୋତ୍ତମ

× × × × ×

ଶ୍ରୀ ରଘୁ ଚରଣ ସରୋରୁହ ମଧୁର ମଧୁରସ
ମଧୁପାନେ ମତ୍ତ ହୋଇଣ ଭଜେ ଅରଜୁନ ଦାସ' (ଅଷ୍ଟମଛାନ୍ଦ)
'ପୁଣ୍ଡରିକ ଲୋଚନ ବେନି
ଅର୍ଜୁନ ଦାସ ଭାବଇ ହୃଦରେ ଘେନି' (ନବମ ଛାନ୍ଦ)
ରାମ ନାମ ପଦ ନରେ ହୃଦେ ଚନ୍ଦ୍ରାକର
ରାମ ନାମ ସୁମରନ୍ତେ ଭବଜନ୍ତୁ ପାର ହେ ।
ଶ୍ରୀରାମ ଶ୍ରୁଚଭଣ ହୋଏ ଅଯୋଧ୍ୟା ପ୍ରବେଶ
ଆନନ୍ଦେ ଧୁଆଂ ଧୂଇଂ ଅରଜୁନ ଦାସ ହେ' (ଦ୍ୱାଦଶ ଛାନ୍ଦ)

## କଳ୍ପଲତା

'ନାମ ଜଗନ୍ନାଥ ଶ୍ରୀମୁଖ କଲା
ବିକଚ ଶ୍ୱେତ ପଦ୍ମ ଦେନି ତୋଲା । ୪ ।
ଦାସବତ୍ସଳ ଶୂନ୍ୟ ଠୂଳ କାୟେ
ଆପଣେ ଓଡ଼ଶାରେ ରାଜା ହୋୟେ' । ୫ ।

× × × ×

ସେ ଜଗନ୍ନାଥ ପଦ୍ମପାଦ ଦାସ,
ମଧୁପ ଶିଶୁ ଅରଜୁନ ଦାସ' । ୧୦ । (ଦ୍ୱିତୀୟ ଛାନ୍ଦ)

'ଜଳଧିକୂଳେ ଅବତାର ଦାରୁରୂପୀ
ସକଳ ଭୁବନେ ଯାର ନିବାସ,
ଶ୍ରୀଜଗନ୍ନାଥଙ୍କ ଚରଣେ ଶରଣ ଅରଜୁନ ଦାସ" (ଚତୁର୍ଥ ଛାନ୍ଦ)

'ଆରତଭଂଜନ ସ୍ୱାମୀ ଅଗ୍ୟାଂ ଯେ ଦେବା ।
ଶରଣଜନମ୍ୟେ ମୁହିଂ କରଇ ସେବା । ୧୧୧ ।

କମଳିଣୀ ପତି ଜଗନ୍ନାଥ ଚରଣ
ଶିଶୁ ଅରଜୁନ ତହିଂ ପଶେ ଶରଣ ।' ୧୧୨ । (ସପ୍ତମ ଛାନ୍ଦ)

ଯେତେବେଳେ ଜଗନ୍ନାଥ ହେତୁ ଦେଖି ତୋଟେଲ
ମୂକତ ସନ୍ଦେଶ ନାହିଂ ଚୂରବେଦ ବୋଲେ ହେ ।
(ନବମ ଛାନ୍ଦ)

'କମଳ ନୟନ କରୁଣାସିନ୍ଧୁ ନୀଳଗିରି ଶିଖେ ବାସ
ଶିରେ କର ବେନି ଯୋଡ଼ଣ ଭୃତ୍ୟ ହୋଇଛି ଅରଜୁନ ଦାସ'
(ଦଶମ ଛାନ୍ଦ)

'ଜଳକେଳି କରନ୍ତି ନାବେ
ଅରଜୁନ କେରୁଆଳ ଧରଇ ଭବେ' (ଏକାଦଶ ଛାନ୍ଦ)

କମଳିଣୀ ପ୍ରସନ୍ନ କରାଇଣ ସିଂହାସନେ ପୀତବାସ
ଦେବତାଙ୍କ ପଛେ ପାଇଛି ପଡ଼ ଶୋଇ ବାହୁଡ଼ଇ
ଅରଜୁନ ଦାସ (ଦ୍ୱାଦଶ ଛାନ୍ଦ)

# ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଭକ୍ତିଧାରା—

ଉତ୍କଳର ସାମାଜିକ ଜୀବନରେ ଏ ଦେଶର ପ୍ରଧାନ ଆରାଧ୍ୟ ଦେବତା ମହାପ୍ରଭୁ ଜଗନ୍ନାଥଙ୍କ ପୂଜା ଓ ଆରାଧନାର ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା ଗଙ୍ଗବଂଶୀୟ ଜଣେ ଶ୍ରେଷ୍ଠ ରାଜା ତୃତୀୟ ଅନଙ୍ଗ-ଭୀମଙ୍କ ରାଜତ୍ୱ କାଳରେ [ ୧୨୧୧-୧୨୩୮ ଖ୍ରୀଷ୍ଟାବ୍ଦ ] ପ୍ରାୟ ଏକଦଶକ ମଧ୍ୟରେ [ ୧୧୯୨-୧୨୦୨ ଖ୍ରୀଷ୍ଟାବ୍ଦ ] ସୁବିସ୍ତୀର୍ଣ୍ଣ ସୈନ୍ଧବ ଗାଙ୍ଗେୟ ଉପତ୍ୟକାରେ ଆଧିପତ୍ୟ ବିସ୍ତାର କରିଥିବା ବିଜୟମଦମତ୍ତ ମୁସଲମ ବାହିନୀର ବଙ୍ଗଦେଶ ଆଡ଼ୁ ବାରମ୍ବାର ପ୍ରବଳ ଆକ୍ରମଣର ଭୀଷଣ ପ୍ରତିରୋଧକାରୀ ମହାବୀର ଅନଙ୍ଗଭୀମ ଆଗଙ୍ଗାଗୋଦାବରୀ ବିସ୍ତୃତ ସ୍ୱୀୟ ଉତ୍କଳ ସାମ୍ରାଜ୍ୟକୁ ଅକ୍ଷୁଣ୍ଣ ରଖି ତାହାକୁ ଶ୍ରୀପୁରୁଷୋତ୍ତମ-ଜଗନ୍ନାଥଙ୍କ ପଦତଳେ ଅର୍ପଣ କରିଥିଲେ ଏବଂ ନିଜକୁ ତାଙ୍କର ପ୍ରତିନିଧିରୂପେ ଭାବି ରାଜ୍ୟ ଶାସନ କରୁଥିବା ତାଙ୍କର ଲିଙ୍ଗରାଜ ମନ୍ଦିରସ୍ଥ ୩୪ ଅଙ୍କର ଅଭିଲେଖରୁ ଜଣାଯାଏ । [୫] ସେହି ସମୟରୁ ଉତ୍କଳର ସମସ୍ତ ନରପତି ନିଜକୁ ଶ୍ରୀଜଗନ୍ନାଥ [ପୁରୁଷୋତ୍ତମ]ଙ୍କ ବରପୁତ୍ର ଓ ପ୍ରତିନିଧିରୂପେ ଭାବି ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ସୂର୍ଯ୍ୟବଂଶୀ ସମ୍ରାଟ୍‌ମାନଙ୍କର ଶ୍ରୀଜଗନ୍ନାଥଙ୍କଠାରେ ଅଚଳା ଭକ୍ତି ଥିବା ସେମାନଙ୍କର ଓଡ଼ିଆ ଅଭିଲେଖମାନଙ୍କରୁ ସ୍ପଷ୍ଟଭାବରେ ଜଣାଯାଏ । ସମଗ୍ର ଭାରତର ଜନୈକ ଶ୍ରେଷ୍ଠ ଦିକ୍ ବିଜୟୀ ସମ୍ରାଟ୍ ସୂର୍ଯ୍ୟବଂଶ ପ୍ରତିଷ୍ଠାତା ମହାବୀର ଗଜପତି କପିଳେଶ୍ୱର ଦେବ

---

(୫) ଶ୍ରୀମଦନଙ୍ଗ ଭୀମଦେବସ୍ୟ ପ୍ରବର୍ଦ୍ଧମାନ ପୁରୁଷୋତ୍ତମ-ସାମ୍ରାଜ୍ୟେ ।

Indian Culture, Vol VI. p. 73

ଜଗନ୍ନାଥଙ୍କ ଜଣେ ପରମ ଭକ୍ତ ଥିବା ତାଙ୍କର ଓଡ଼ିଆ ଲେଖ-ମାନଙ୍କରୁ ଜଣାଯାଏ । ଯଥା—

'ପ୍ରତାପ କପିଳେଶ୍ୱର ଦେବ ମହାରାଜାଙ୍କର ସମସ୍ତ ୩୧ ଅଙ୍କ×ଶ୍ରୀପୁରୁଷୋତ୍ତମ କଟକେ ଦଖିନଘରେ ମାଜଣା ମଣ୍ଡପେ ବଜେ ହୁଏ ଅବଧାରିତ ଆଗ ।° ହୋଇଲା ମୁଦଲେ ହେ ଶ୍ରୀଜଗନ୍ନାଥ ମୋହର ବାହୁଜ ଅଭ୍ୟନ୍ତର ସମସ୍ତ ତ ତୁ ଜାଣୁ, ମୋହର ଯେତେ ରତନ ପଦାର୍ଥ ଅଛୁ ସେ ତୋହର × × ଏ ଭୂମିଂଖଣ୍ଡ ତୁ ଯାହାକୁ ଅନୁଗ୍ରହ କରୁ ମୋହର ବେପ+ବେ ।" (୬ କ)

"ବୀର ଶ୍ରୀ ଗଜପତି ପ୍ରତାପ କପିଳେସର ଦେବ ମହାରାଜାଙ୍କର ... ୩୫ ଅଙ୍କ ଶ୍ରାହ୍ମୀ ... ହେ ଜଗନ୍ନାଥ ତୋହ ସେବକ ଏମନ୍ତ ଜଣାଉଅଛୁ" (୬ ଖ)

"ପ୍ରତାପ କପିଳେସରଦେବ...ସମସ୍ତ ୪୨ଅଙ୍କ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଦେବଙ୍କ ପଦ୍ମପାଦକୁ ଭକ୍ତି ନିମିତ୍ତେ୍ୟ କପିଳେସର ରଜାଏ ସେବା କରି ଦେଲେ ରତ୍ନ ତୋଡ଼ରମାନ ଶ୍ରୀଭୁଜରେ ରତ୍ନ ଙ୍ଗ ରଙ୍କ ଦୁଇ, ପ୍ରମେଶ୍ୱରଙ୍କ ମଣହୁଂକ ସୁନା ଯୋଗାଡ଼" (୬ ଗ)

ଜଣେ ପ୍ରବଳ ପରାକ୍ରାନ୍ତ ବହୁ ଯୁଦ୍ଧବିଜେତା ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ବିସ୍ତୃତ ବିରାଟ ସାମ୍ରାଜ୍ୟର ଅଧିପତି ଗଜପତି

---

୬ । (କ, ଖ, ଗ) Oriya inscriptions of the 15th and 16th centuries by M. M. Chakravarty.
J. A. S. Bengal, 1893 pp. 99. 95,93

କପିଳେଶ୍ୱର ଦେବଙ୍କର ଶ୍ରୀଜଗନ୍ନାଥଙ୍କ ପାଦପଦ୍ମରେ ଏପରି ଆତ୍ମସମର୍ପଣ ସେ ଯୁଗରେ ଉତ୍କଳୀୟମାନଙ୍କର ଜଗନ୍ନାଥ ଭକ୍ତି-ପରାୟଣତାର ଏକ ଜ୍ୱଳନ୍ତ ନିଦର୍ଶନ । ସେହି ଯୁଗ ପ୍ରଭାବରେ ଅନୁପ୍ରାଣିତ ହୋଇ ଭକ୍ତ କବି ଅର୍ଜ୍ଜୁନ ଦାସ ସ୍ୱୀୟ କାବ୍ୟର ନାନା ସ୍ଥାନରେ ପ୍ରଭୁ ଜଗନ୍ନାଥଙ୍କ ମାହାତ୍ମ୍ୟ କୀର୍ତ୍ତନ କରିଛନ୍ତି । ବିଷୟବସ୍ତୁ ସହିତ କୌଣସି ସମ୍ପର୍କ ନଥିଲେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ଧୂପ, ଅବକାଶ, ବେଶ, ଭୋଗ ଓ ଯାତ୍ରା ପ୍ରଭୃତିର ବର୍ଣ୍ଣନା କାବ୍ୟର ବିଭିନ୍ନ ସ୍ଥାନରେ ବର୍ଣ୍ଣିତ ହୋଇଅଛି । କବି କଳ୍ପଲତା କାବ୍ୟର ପ୍ରଥମ ଛାନ୍ଦ ଆରମ୍ଭରେ ଶ୍ରୀଜଗନ୍ନାଥ ଦେବଙ୍କ ସ୍ନାନଯାତ୍ରା, ଏକାଦଶ ଛାନ୍ଦ ଶେଷରେ ଅକ୍ଷୟ ତୃତୀୟା ଦିବସରେ ଚନ୍ଦନ ଯାତ୍ରାର ପ୍ରାରମ୍ଭ, ଦ୍ୱାଦଶ ଛାନ୍ଦ ଶେଷରେ ଗୁଣ୍ଡିଚା ଯାତ୍ରା ବର୍ଣ୍ଣନା କରି ନୀଳାଚଳପତି ଶ୍ରୀଜଗନ୍ନାଥଙ୍କଠାରେ ନିଜର ଅଚଳା ଭକ୍ତି ପ୍ରଦର୍ଶନ କରିଛନ୍ତି । ଯଥା—

'ଶୁଣ ନିତ୍ୟ ରସିକଜନ    ଜ୍ୟେଷ୍ଠ ପୂର୍ଣ୍ଣମୀଦିନ
ଜ୍ୟେଷ୍ଠାନକ୍ଷତ୍ର ସେ କାଳେ,    ଝମକ ବାଜେ ସିନ୍ଧୁକୂଳେ । ୧ ।

× × ×

ସ୍ନାହାନ ମଣ୍ଡପେ ବିଜେ    ହରି ଶବଦ ଗୋଳ ବାଜେ
ପଉର୍ଣ୍ଣିକ ଥାଉ ରଜନୀ,    ଜ୍ୟେଷ୍ଠାନକ୍ଷତ୍ର ଯୋଗ ଦିନ । ୮ ।
ଚନ୍ଦନ କର୍ପୂର ଆଣି    ଗୋଳନ୍ତି ସୁର ନଦୀ ପାଣି,
ଅଭିଷେକ କରନ୍ତି ତୋଳି    ଗୋବିନ୍ଦ ରାମ ମଣ୍ଡଳୀ' । ୯ ।
( ପ୍ରଥମ ଛାନ୍ଦ )

'ବୈଶାଖ ଶୁକ୍ଳ ତିଥି    ତୃତୀୟା ବୋଲି ବିଖ୍ୟାତି
ନୀଳଗିରି ନୃପବର ଦେବନ୍ତି ଦେନି ।

ସକଳ ସନ୍ତାନ ? ମିଳି ଚନ୍ଦନ ଉଚ୍ଛବ—
ଆପଣେ ଅଛନ୍ତି ସଙ୍ଗେ ଜଳଜାସନା’
( ଏକାଦଶ ଛାନ୍ଦ )

‘ଶୁଣ ହେ ରସିକମାନେ ଦକ୍ଷିଣ ଉଦଧିକୂଳେ
ଯେଣେବର ମାଳଗିରି ନବରତ୍ନ ଗୁଣ୍ଡିରୁ ବିଜୟେ କଲେ ।’
( ତ୍ରୟୋଦଶ ଛାନ୍ଦ )

ଓଡ଼ିଶାର ପ୍ରଥମ କାବ୍ୟକାର ଅର୍ଜୁନ ଦାସ ସ୍ୱକୃତଗ୍ରନ୍ଥର ମଙ୍ଗଳାଚରଣରେ ଶ୍ରୀଜଗନ୍ନାଥଦେବଙ୍କ ସ୍ତୁତିବାଚନ ରୂପକ ଯେଉଁ ଆଦର୍ଶ ପ୍ରଦର୍ଶନ କରିଛନ୍ତି ତାହା ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀର ପ୍ରାୟ ସମସ୍ତ କାବ୍ୟ ପ୍ରଣେତା ଅନୁସରଣ କରିଛନ୍ତି । ତେଣୁ ତାଙ୍କୁ ପ୍ରାଚୀନ ଓଡ଼ିଆ କାବ୍ୟ ସାହିତ୍ୟରେ ଉକ୍ତ ମଙ୍ଗଳା-ଚରଣ ଧାରାର ପ୍ରବର୍ତ୍ତକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ସପ୍ତଦଶ ଶତାବ୍ଦୀର ଶେଷ ଭାଗରୁ ଉତ୍କଳୀୟ ସମାଜରେ ଶ୍ରୀରାଧାକୃଷ୍ଣ ଉପାସନାର ଲୋକପ୍ରିୟତା ଓ ପ୍ରାଧାନ୍ୟ କ୍ରମଶଃ ବୃଦ୍ଧି ଲାଭ କରିଥିବାରୁ ସେ ଯୁଗର ପ୍ରାୟ ଅଧିକାଂଶ କବି ଶ୍ରୀଜଗନ୍ନାଥଙ୍କ ପରିବର୍ତ୍ତେ ଶ୍ରୀରାଧାକୃଷ୍ଣଙ୍କ ସ୍ତୁତି ଗାୟନ କରି ଗ୍ରନ୍ଥର କଥାବସ୍ତୁ ଆରମ୍ଭ କରିଛନ୍ତି ।

**କଳ୍ପଲତା କାବ୍ୟର ବସ୍ତୁ**—କଳ୍ପଲତା ଏକ କାଳ୍ପନିକ କାବ୍ୟ ହୋଇଥିବାରୁ ଏଥିରେ କବିଙ୍କ କଳ୍ପନା ବିଳାସ ଆତ୍ମପ୍ରକାଶ କରିବା ସ୍ୱଭାବ ସିଦ୍ଧ । ତେଣୁ କବି ଇନ୍ଦ୍ର ଗୋବିନ୍ଦଙ୍କ ସଭାରେ ସୁରେଖାର ନର୍ତ୍ତନ, ଇନ୍ଦ୍ରଙ୍କ ଅଭିଶାପରେ ବସନ୍ତକ ଓ ସୁରେଖାର ମର୍ତ୍ତ୍ୟରେ ଜନ୍ମଲାଭ, ମୃତ୍ୟୁସଞ୍ଜୀବନୀ ମନ୍ତ୍ରଦ୍ୱାରା ଆତ୍ମହତ୍ୟାକାରିଣୀ କଳ୍ପଲତାର, ଜୀବନ ସଂଚାର, ନାଗକନ୍ୟାଙ୍କ

ଦ୍ୱାରା ଜଳକ୍ରୀଡାରତ ନାୟକ ଅମରଶିଖରଙ୍କ ଅପହରଣ ଓ ଏକ ସପ୍ତାହ ପରେ ପୁନର୍ବାର ପ୍ରତ୍ୟର୍ପଣ ପ୍ରଭୃତି କେତେକ ଅତି-ମାନୁଷିକ ଘଟଣା ବର୍ଣ୍ଣିତ ହୋଇଥିଲେ ମଧ୍ୟ ଏହା କାବ୍ୟର ସୌନ୍ଦର୍ଯ୍ୟ ହାନି ବା ଘଟଣା ପ୍ରବାହର ସ୍ୱଚ୍ଛନ୍ଦ ଗତିରେ କୌଣସି ବାଧା ଘଟାଇ ନାହିଁ । ପରନ୍ତୁ ଏହାଦ୍ୱାରା କଥାବସ୍ତୁର ଉତ୍କର୍ଷ ସାଧିତ ହୋଇଛି ।

'କଳ୍ପଲତା' ଗୋଟିଏ ଆଦିରସାତ୍ମକ ମିଳନାନ୍ତକ କାବ୍ୟ ହେଲେ ମଧ୍ୟ କବି ଅର୍ଜୁନ ଦାସ ବସନ୍ତକ ଓ ସୁନ୍ଦରେଖାର କେଳି, ବିବାହ ପରେ ଅମରଶିଖର ଓ କଳ୍ପଲତାର ରତିକ୍ରୀଡ଼ା, ଏକ ସପ୍ତାହବ୍ୟାପୀ ବିଚ୍ଛେଦ ପରେ ଉଭୟଙ୍କ ପୁନର୍ମିଳନ ଅତି ସଂଯତ ଭାଷାରେ ରୁଚିରୋଚକ ଭାବରେ ବର୍ଣ୍ଣନା କରିଛନ୍ତି । ଏହା ପରବର୍ତ୍ତୀଯୁଗର କାବ୍ୟଗୁଡ଼ିକ ପରି ଉତ୍କଟ ଆଦିରସାତ୍ମକ ବର୍ଣ୍ଣନାରୁ ମୁକ୍ତ ଥିବାରୁ ଆଦର୍ଶ ସ୍ଥାନୀୟ ହୋଇଛି । କବି ବିଷ୍ଣୁ-ଦାସଙ୍କ ସମୟରୁ ଓଡ଼ିଆ କାବ୍ୟଗୁଡ଼ିକରେ ଉପନୀତଯୌବନା ନାୟିକାର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ସୌନ୍ଦର୍ଯ୍ୟର ଯେପରି ବିସ୍ତୃତ ଅରୁଚିକର ବର୍ଣ୍ଣନା ପରିଦୃଷ୍ଟ ହୁଏ, ଉକ୍ତ କାବ୍ୟ ସେଥିରୁ ମୁକ୍ତ । ପରନ୍ତୁ କବି ପ୍ରଦତ୍ତ ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା ଅଦ୍ଧର୍ଦ୍ଧ ହେଲେ ମଧ୍ୟ ମନୋରମ ଓ ତୃପ୍ତିଦାୟକ ।

ଚନ୍ଦ୍ରଙ୍କ ସଭାରେ ସୁରେଖା ପ୍ରଭୃତି ଅପ୍‌ସରାଙ୍କ ନୃତ୍ୟ, କୃଷ୍ଣବେଣୀ ତୀରବର୍ତ୍ତୀ ଚନ୍ଦନବନ ଓ ସେଠାରେ ମୃତସଞ୍ଜୀବନୀ ମନ୍ତ୍ରଦ୍ୱାରା କଳ୍ପଲତାର ପୁନର୍ଜୀବନଲାଭ, ଦୀର୍ଘକାଳ ଈପ୍‌ସିତବର ଅମର ଶିଖରଙ୍କ ସହିତ ତାଙ୍କର ମିଳନ ଓ ବିବାହ ଓ ତୋଟା ପୋଖରୀରେ ନାୟକ ନାୟିକାଙ୍କ ଜଳକେଳି ବର୍ଣ୍ଣନା ବିଶେଷ

ଉପଭୋଗ୍ୟ ହୋଇଛନ୍ତି । ସେଥିପାଇଁ କଳ୍ପଲତାଙ୍କ ଆତ୍ମହତ୍ୟା, ତାଙ୍କ ଶବର ଚିତାରୋପଣ ନିମିତ୍ତ ପ୍ରସ୍ତୁତ, ନାୟକ ବିଚ୍ଛେଦ ଜନିତ ଦୁଃଖାପନୋଦନ ପାଇଁ କଳ୍ପଲତାର ଅଗ୍ନି ପ୍ରବେଶ ଦ୍ୱାରା ଆତ୍ମହତ୍ୟାର ଚେଷ୍ଟା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଛନ୍ତି । କିନ୍ତୁ ଇନ୍ଦ୍ରଙ୍କ ଅଭିଶାପ ବୃତ୍ତାନ୍ତର ପୁନରାବୃତ୍ତିର ଉଲ୍ଲେଖ ଦ୍ୱାରା କାବ୍ୟର ମର୍ଯ୍ୟାଦା କ୍ଷୁଣ୍ଣ ହୋଇଥିବାର ମନେହୁଏ ।

ଗ୍ରନ୍ଥପାଠରୁ ସେ ଯୁଗର ସାମାଜିକ ଅବସ୍ଥା ସମ୍ବନ୍ଧରେ କେତେକ ଧାରଣା କରିହୁଏ । ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ ରଚିତ ସରଳା ମହାଭାରତରୁ ଜଣାଯାଏ ଯେ ତାଙ୍କ ସମୟରେ ଜନସାଧାରଣଙ୍କର ସିଦ୍ଧପୁରୁଷ ଗୋରଖନାଥଙ୍କ ମାହାତ୍ମ୍ୟରେ ଦୃଢ଼ ବିଶ୍ୱାସ ଥିଲା । ପଞ୍ଚସଖା ବିଶେଷତଃ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ରଚନାବଳୀରେ ଗୋରଖନାଥ ପ୍ରଭୃତି ସିଦ୍ଧ-ପୁରୁଷମାନଙ୍କ ମହିମା କୀର୍ତ୍ତିତ ହୋଇଛନ୍ତି । ତେଣୁ ପଞ୍ଚସଖା ଯୁଗରେ ରଚିତ କଳ୍ପଲତା କାବ୍ୟରେ ଗୋରଖଭକ୍ତିପନ୍ଥର ସ୍ପଷ୍ଟ ସଂକେତ ମିଳେ । ଯଥା—

'**ଗୋରେଖ ପ୍ରସାଦେ** କୁମାରିକ କୁମର ହୋଇବ ଭେଟ' ।
( କଳ୍ପଲତା ପୃ ୧୮ )

ଉକ୍ତ କାବ୍ୟର ବର୍ଣ୍ଣିତ ଜଙ୍ଗମମାନେ ଶୈବ ସଂପ୍ରଦାୟଭୁକ୍ତ ସନ୍ନ୍ୟାସୀ । ଉତ୍କଳରେ ଜଙ୍ଗମମାନେ କ୍ୱଚିତ ପରିଦୃଷ୍ଟ ହେଉଥିଲେ ମଧ୍ୟ ଦକ୍ଷିଣ ଭାରତରେ ସେମାନେ ବିଶେଷ ସଂଖ୍ୟାରେ ଥିବାରୁ ତତ୍‌କାଳୀନ ସମାଜରେ ସେମାନଙ୍କର ଯଥେଷ୍ଟ ପ୍ରଭାବ ଓ ପ୍ରତିପତ୍ତି ଥିଲା । କବିଙ୍କ ସମୟରେ ଅନ୍ଧ୍ର ଓ କର୍ଣ୍ଣାଟ ରାଜ୍ୟ ସହିତ ଓଡ଼ିଶାର

ଘନିଷ୍ଠ ରାଜନୈତିକ ଓ ସାଂସ୍କୃତିକ ସଂପର୍କ ଥିବାରୁ କବି ସେମାନଙ୍କ ସହିତ ସୁପରିଚିତ ଥିବାର ମନେହୁଏ ।

ଜଳକେଳି ସମୟରେ ନାଗ କନ୍ୟାଙ୍କ ଦ୍ୱାରା ଅପହୃତ ସ୍ୱାମୀଙ୍କ ହଠାତ୍ ତିରୋଭାବରେ ମୃତ୍ୟୁ ଆଶଙ୍କା କରି କଳ୍ପଲତା ଚିତାଗ୍ନି ପ୍ରବେଶ ଦ୍ୱାରା ଆତ୍ମହତ୍ୟା କରିବା ପାଇଁ ସ୍ଥିର କରିଥିଲେ । ଏଥିରେ ପିତାମାତା ଓ ପରିବାରବର୍ଗଙ୍କ ସମର୍ଥନ ପାଇଥିବାରୁ ସେ ସମୟରେ ସମାଜରେ ସତୀଦାହ ପ୍ରଥା ପ୍ରଚଳିତ ଥିବାର ପ୍ରମାଣ ମିଳେ । କଳ୍ପଲତାର ବିବାହ ଓଡ଼ିଆ ହିନ୍ଦୁର ବିବାହ ପଦ୍ଧତି ଅନୁଯାୟୀ ସଂପନ୍ନ । ରାଜଉଆସରେ ମଧ୍ଯ ବେଦିନେ ପଖାଳ ଭାତର ବିଶେଷ ଆଦର ଥିବା ଜଣାଯାଏ । ଏଥିରେ ପ୍ରଦତ୍ତ ବେଶଭୂଷା, ଅଳଙ୍କାର ଓ ରାଜକୀୟ ବୈଭବ ପରିପୂର୍ଣ୍ଣ ନାନାବିଧ ଉପକରଣର ବର୍ଣ୍ଣନାରେ ସେ ଯୁଗରେ ଓଡ଼ିଆ ସାମାଜିକ ଜୀବନର ଏକଚିତ୍ର ମିଳେ ।

କବି ଅର୍ଜୁନ ଦାସଙ୍କ ସମସାମୟିକ କବି ନରସିଂହ ସେନଙ୍କ ରଚିତ ଶ୍ରେଷ୍ଠ 'ପରିମଳା' କାବ୍ୟରେ ପ୍ରସିଦ୍ଧ ସଂସ୍କୃତ କାବ୍ୟ ସମୂହର ବିଶେଷତଃ ଉତ୍କଳରେ ରଚିତ ଓ ଅତି ଜନପ୍ରିୟ ନୈଷଧ ମହାକାବ୍ୟର ଯେପରି ଗଭୀର ପ୍ରଭାବ ପରିଲକ୍ଷିତ ହୁଏ ତାହା 'କଳ୍ପଲତା'ରେ ଦେଖାଯାଏ ନାହିଁ । କଳ୍ପଲତାର ଛନ୍ଦୟ ଗୀତ ପଦ ଯୋଜନାରେ ଗୀତଗୋବିନ୍ଦର ସାମାନ୍ୟ ପ୍ରଭାବ ଥିବାର ଆଭାସ ମିଳେ । ପୁରୀବାସୀ ଭକ୍ତ କବିଙ୍କ ପକ୍ଷେ ଗୀତଗୋବିନ୍ଦ ଦ୍ୱାରା ପ୍ରଭାବିତ ହେବା ସ୍ୱତଃସିଦ୍ଧ । ଅନ୍ୟଥା ଏହା ସଂସ୍କୃତ ମହାକାବ୍ୟଗୁଡ଼ିକର ସର୍ବବ୍ୟାପୀ ପ୍ରଭାବରୁ ମୁକ୍ତ ଥିବାରୁ ଏହାକୁ ଏକ ଖାଣ୍ଟି ଓଡ଼ିଆ କାବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉକ୍ତ କାବ୍ୟର ପଦଯୋଜନା ବିଶେଷ ପ୍ରଣିଧାନ ଯୋଗ୍ୟ । ଏଥିରେ ବ୍ୟବହୃତ ଓ କାଳକ୍ରମେ ଲୋପପ୍ରାପ୍ତ ଅନେକ ପଦ

ସୂର୍ଯ୍ୟବଂଶୀ ରାଜତ୍ୱକାଳ (୧୪୩୫-୧୫୩୦) ରେ ଖୋଦିତ ଓଡ଼ିଆ ଅଭିଲେଖଗୁଡ଼ିକରେ ଦେଖାଯାଏ । ଏ ସଂପର୍କରେ ତୁଳନାତ୍ମକ ଆଲୋଚନା କରିବାପାଇଁ ସୁଧୀ ଗବେଷକମାନଙ୍କୁ ଅନୁରୋଧ । ରଚନା ଶୈଳୀ ଓ ପଦ ଯୋଜନା ଦୃଷ୍ଟିରୁ କବି ଅର୍ଜୁନ ଦାସଙ୍କ 'ରାମ ବିଭା' ଓ 'କଳ୍ପଲତା' କାବ୍ୟଦ୍ୱୟ ମଧ୍ୟରେ ବିଶେଷ ସାମଞ୍ଜସ୍ୟ ଲକ୍ଷିତ ହୁଏ ।

ପରିଶେଷରେ ଏତିକି ବକ୍ତବ୍ୟ ଯେ 'କଳ୍ପଲତା' କାବ୍ୟର ଅନ୍ୟ ଏକ ପୋଥିର ଦୁଷ୍ପ୍ରାପ୍ୟତା ହେତୁ ମିଉଜିୟମରେ ସଂରକ୍ଷିତ ଖଣ୍ଡିଏ କୀଟଦଂଷ୍ଟ ପ୍ରାଚୀନ ପୋଥିରୁ ପାଠୋଦ୍ଧାର କରିବାପାଇଁ ବାଧ୍ୟ ହେଲି । ତେଣୁ କେତେକ ସ୍ଥାନ ଶୂନ୍ୟ ରହି ଯାଇଛି ଓ କେତେକ ପଦର ପାଠ ସନ୍ଦେହଜନକ । ଏ ସମସ୍ତ ଅଭାବ ଓ ଅସୁବିଧା ସତ୍ତ୍ୱେ ସରକାରୀ ବ୍ୟୟରେ ଏହି ଗ୍ରନ୍ଥରସଟି ସୁଧୀସମାଜର ସହଜଲଭ୍ୟ ହୋଇଥିବାରୁ ମୋର ପରିଶ୍ରମ ସାର୍ଥକ ହୋଇଛି । ଆଲୋଚନା ଓ ପାଠୋଦ୍ଧାରରେ ତ୍ରୁଟି ମାର୍ଜନା କରିବାପାଇଁ ଅନୁରୋଧ ।

ଭୁବନେଶ୍ୱର,
ଶ୍ରୀରାମ ନବମୀ
ତା ୨୫ । ୩ । ୧୯୬୧



ଓଡ଼ିଶା ରାଜ୍ୟ
ସଂଗ୍ରହାଳୟ ସଂରକ୍ଷକ,
**ଶ୍ରୀ କେଦାରନାଥ ମହାପାତ୍ର**



# କଳ୍ପଲତା

## ପ୍ରଥମ ଛାନ୍ଦ

ଶୁଣ ହେ ରସିକଜନ, ଜ୍ୟେଷ୍ଠ ପୂର୍ଣ୍ଣମୀ ଦିନ,
 ଜ୍ୟେଷ୍ଠା ନକ୍ଷତ୍ର ସେକାଳେ, ଝମକ ବାଜେ ସିନ୍ଧୁକୂଳେ ।୧।
ନ୍ୟଗ୍ରୋଧ[1] ତରୁ ନିକଟେ, ନୀଳ କୁଧର ମକୁଟେ,
 ଜଗନ୍ନାଥ ନୃପତିମଣି, ହୋଇଣ ଦିବ୍ୟ କାଚ୍ଯେଷଣି । ୨ ।
ସିନ୍ଦୂର ପାଟେକ ବାନ୍ଧିଂ, ସୁରଙ୍ଗ ଦିବ୍ୟ ବାସ ପିନ୍ଧି,
 ସେ ଲଗି ହୋଇଣି ବସି, ଦେବଙ୍କୁ କୃଷ୍ଣେଂ ବୋଇଲ ହସିଂ ।୩।
ନିଦାଘ ଋତୁର ଡାଗ ? ଚନ୍ଦନେ ନ ସରଇ ବେଗ,
 ବାହାରକୁ ବିଜୟେ କରିବୁ, ସ୍ନାନହୁଂ ମାଜଣା ସାରିବୁ ।୪।
ଦେହୁଁତେ ବୋଲି ବିଜୟେ କରି, ବାଜଇ ଯାନା ମହୁରି,
 ଷୀରଷନ୍ଦ[2] କ୍ଷୀର କାହାଳୀ, ଯୁବତୀ ଦୀପ୍ତ ହୁଳହୁଳୀ । ୫ ।
ନିରନ୍ତରେ ଦଉଡ଼ି ମାଳା, ବିସ୍ତରଇ ଶ୍ରୀମୁଖ କଳା,
 ଚନ୍ଦ୍ରଉଦଅ ଉଲ୍ଲାସେ, ଚନ୍ଦ୍ର କି ଉଦେ ତୋଳା ଦିଶେ । ୬ ।
ସୁରଙ୍ଗ ଅଧରର X ଛା, କମନୀୟ ହେମର ଚଛା,
 ନୀଳ ଜଳଧର ଶ୍ରୀମୁଖ, ଦେଖିଲେ ହରଇ ଦୁଃଖ ଶୋକ ।୭।
ସ୍ନାହାନ ମଣ୍ଡପେ ବିଜେ, ହରି ଶବଦ ଗୋଳବାଜେ,
 ଘଡ଼ିଏକ ଥାଉ ରଜନୀ, ଜ୍ୟେଷ୍ଠା ନକ୍ଷତ୍ର ଯୋଗ ଦେନି ।୮।

---

୧ । ନ୍ୟଗ୍ରୋଧ ବା ବଟବୃକ୍ଷ, ଏଠାରେ **ଜଗନ୍ନାଥ ମନ୍ଦିର ନିକଟରେ** ଥିବା କଳ୍ପବୃକ୍ଷକୁ ବୁଝାଉଛି । ୨ । ଷୀର ଛଣ ।

ଚନ୍ଦନ କର୍ପୂର ଆଣି, ଗୋଳନ୍ତି ସୁରନଦୀ ପାଣି,
ଅଭିଷେକ କରନ୍ତି ତୋଳି, ଗୋବିନ୍ଦ ଶ୍ୟାମ ମଉଳୀ । ୯ ।
ହରିଲ ବଦନ କଳା, ଆନ ଦିଶିଲ ବେନି ଡୋଳା,
ମାଳଗିରି ମଉଳୀ ଭେଦି, ବହୁଅଛି ଗଙ୍ଗ ନଦୀ । ୧୦ ।
ବ୍ରହ୍ମା ଇନ୍ଦ୍ର ରୁଦ୍ର ସକଳେ, ବୁଡ଼ନ୍ତି ପଦ୍ମପାଦ ଜଳେ,
ଗନ୍ଧର୍ବେ ଗାବନ୍ତି ଗୀତ, ଅପସରା କରନ୍ତି ନୃତ୍ୟ । ୧୧ ।
ଯେସନ ସମୟ ବେଳେ, ଗନ୍ଧର୍ବ ଅପସରା ମେଳେ,
ଚିତ୍ରରଥ ଗନ୍ଧର୍ବ ବୀର, ତିଲୋତ୍ତମା ତାହା ସାଙ୍ଗର ।୧୨।
ଦେଖିଣ ସୁରେଖା ନାରୀ, ହସିଣ କରତାଳ ମାରି,
ବସନ୍ତକ ଗନ୍ଧର୍ବ ହସି, ମାନ ପାଇଲ ସୁରୁକେଶୀ । ୧୩ ।
ନିରେଖି ଅବନୀ ତୋଳିଲେ, ବୁଡ଼ିଲ ଅଭିମାନ ଜଳେ,
ଲୋଚନୁ ବହଇ ଧାରି, ସନ୍ତାପ କହି ନ ପାରି । ୧୪ ।
ତିଲୋତ୍ତମା ଆକୁଳ ଦେଖି, ପଚାରିଲ ତାହାର ସଖୀ,
ଦେଖ ସଖି ! କରୁଣା ସିନ୍ଧୁ ଆରତଜନଙ୍କର ବନ୍ଧୁ ।୧୫।
ଯେ ତୋର ବଦନ ଇନ୍ଦୁ, କାଳିମା[୩] କର କି କେ କାନ୍ଦୁ,
କେ ତୋତେ କଲଙ୍କ କସ, ତାହାକୁ ବହୁ ଯେତେ ରୋଷ ।୧୬।
ତିଲୋତ୍ତମା ସଖୀକି କହିଂ, କିମ୍ପା ମୁଁ ଅଛି ଦେହ ବହିଂ,
ବସନ୍ତକ ସୁରେଖା ସଖୀ, କିମ୍ପା ହସିଲେ ମୋତେ ଦେଖି ।୧୭
କଳାନିଧି ବୋଲଇ ଶୁଣି, କହିବା ତାହାଙ୍କର ଗୁଣ,
ଯାଉ ତୋ ହୃଦର କଥା, ବହୁତ ତାହାଙ୍କର କଥା ।୧୮।
ଶୁଣିଣ ଗୁଡ଼ଲ ମାନ, ହୋଇଣ ଅତି ସାବଧାନ,
କଳାନିଧି ସଖୀ ସଙ୍ଗରେ, କହଇ ତିଲୋତ୍ତମା ଆଗେ ।୧୯।

---

୩ । କଳମା (ପୋଥିପାଠ)

ଇନ୍ଦ୍ର ତୋତେ କଲକ କୋପ, ଦେଲକ ମହାଘୋର ଶାପ,
ତହିଁର କେତେକ ଦିନେ, ଯେଉଁ ଦୁହେଁ ଥିଲେ ଫୁଲବନେ ।୨୦।
କୁସୁମ ତୋଳନ୍ତି ରଙ୍ଗେ, ମୁଁ ଥିଲି ତାହାଙ୍କ ସଙ୍ଗେ,
  ଅନୁରାଗ ବଢ଼ିବା ପାଇଁ, ସୁରେଖା ଲୁଚିଲ ଯାଇଁ ।୨୧।
ବସନ୍ତକ ନ ଦେଖି ନାରୀ, ନୟନୁ ନ ରହଇ ବାରି,
  ବିରହର ଆକୁଳ ଦେଖି, ପଚ୍ଛଣ ବୃଜିଲ ଆଖି । ୨୨ ।
ଭିଡ଼ିଣ କରେ ଆଲିଙ୍ଗନ, ଆରମ୍ଭେ ଅଧରର ପାନ,
  ବସନ୍ତକ ବୋଲଇ ବାମା, ଦୁହେଁ ଦୁହିଁଙ୍କ ଉପମା ।୨୩।
ଗୁରୁ ସନ୍ତର ସଂସାର, ଆମ୍ଭର ଜୀବନ ସାର,
  ଦାରୁଣ ହୃଦୟ ମୋହର, ନଦେଖି ନୋହିଲ ବାହାର ।୨୪।
ସୁରେଖା ସଲଜ୍ଜିତ ହୋଇ, ଚରଣେ ପଡ଼ିଲକ ଯାଇ,
  ବସନ୍ତକ ବିକାର ହୋଇ, ହୃଦରେ ଧଇଲ ନେଇ । ୨୫ ।
ଉଠିଣ ସୁରେଖା ନାରୀ, ବସନ୍ତକ କର ଧରି,
  କଳପତରୁ ଛୁଇଁଲ, ନିୟମ କରି ହୋଇଲ । ୨୬ ।
କେବେହେଁ ମୋର ଆୟୁତେ, ବିଚ୍ଛେଦ ନୋହିଁବ ତୋତେ,
  ସୁରପତି ଯାହା ବୋଲିବ, ତାହାକେ ବଞ୍ଚାଇ ପାରିବ ।୨୭।
ଯେତେ ବୋଲିଣ କାମେମୀ, ଚଳଇ ଗନ୍ଧର୍ବଙ୍କୁ ଘେନି,
  ପ୍ରବେଶ ନିଜ ମନ୍ଦିରେ, ବସିଲେ ପଲଙ୍କ ଉପରେ । ୨୮ ।
ଆଲିଙ୍ଗନ ଅଧରପାନ, କାଢ଼ରେ[୪] ଯେତେ ଚୁମ୍ବନ,
  ବିବିଧ ସୁରତି ରଙ୍ଗ, ସମରେ ସଜ ଅନଙ୍ଗ । ୨୯ ।
ସମ୍ପୂର୍ଣ୍ଣି ରସ ସେ କାଳେ, ବାହାରେ ଡାକଇ ସୁରୀଳେ,
  ସୁରେଖା ହୁଅ ଗୋ ସଜ, ନୃତ୍ୟ ଦେଖିବେ ଦେବରାଜ ।୩୦

---

୪ । ଆଦରେ ଅଧିକ ସଙ୍ଗତ ହେବ ।

ମଣ୍ଡିଲେ ସୁଧର୍ମା ସଭା, ବିଜୟେ କଲେ ସର୍ବ ଦେବା,
ଇନ୍ଦ୍ର ଗୋବିନ୍ଦଙ୍କୁ ଘେନି, ଆପଣେ ଆସେ ପଦ୍ମଯୋନି । ୩୧ ।

ଶୁଣି ସୁରେଖା ସୁନ୍ଦରୀ, ହୋଇଲା ହୃଦୟ ବିଦାରି,
କାନ୍ତଙ୍କୁ କରିଣ କୋଳ, ଲୋତକ ପୂରେ ବେନି ଡୋଳ ।୩୨

ବଲ୍ହର* ବଦନ ଧରି, ଚୁମ୍ବନ ଦେଲା ସୁନ୍ଦରୀ,
ଅଧରେ ଦନ୍ତନଘାତ, ଦେଇ ବୋଲଇ ପ୍ରାଣନାଥ ।୩୩।

ଯେଉଁଠାରେ ତୁ ବସିଥିବୁ, କେବେହେଁ କାହିଁ ନ ଯିବୁ,
ଅସ୍ଥାନକୁ ମୋହର ଗଲେ, ନାଚ ମୁଁ ନପାରିବ ଭଲେ ।୩୪।

ଯେତେବେଳେ ଦେଖିବ ତୋତେ, କେହି ନଦାଶିବେ ମୋତେ
ସୁରପତି କରିବେ କୋପ, ଦୁହିଁଙ୍କ ଦେବେଟି ଶାପ ।୩୫।

ବସନ୍ତକ ବୋଲେ ରେ ବାମା, ତୋହର ଗଲେ ସେ ଜାଣିମା,
ସୁରେଖା ବୋଲଇ ବାଣୀ, ମୁହିଁ ଆସିବ ଯେହ୍ନିଂକ୍ଷଣି ।୩୬।

ବଲ୍ହେ ବୁଝାଇ ବାଳୀ, କର୍ପୂର ଚନ୍ଦନ ସାମଲୀ,
ଦକ୍ଷିଣ ଦେବାଙ୍ଗ ବାସ, କୁସୁମେ ଶୋହେ ଶୃଷ୍ଟକେଶ ।୩୭।

ମୁକୁତା କାନ୍ଥୋଲି ଲଇ, କର୍ପୂର ନାଗବଲ୍ଲୀ ଖାଇ,
ପୁରୁ ବାହାର ହୋଇଲା, ସଙ୍ଗୀତ ସାଙ୍ଗେଣ ମିଳିଲା ।୩୮।

ବାଜିଲା ମର୍ଦ୍ଦଳ ଘାତ, ରଞ୍ଜନ ମୁଳାଙ୍କ ଚରିତ,
ଗନ୍ଧର୍ବ ଗଅନ୍ତି ଯଶ, ନୃତ୍ୟରେ ପଶିଘାଇ ଘସ ।୩୯।

ଶୁଣିଣ ସୁରେଖା ଧାଇଂଲା, ମର୍ଦ୍ଦଳ କଣ୍ଠରେ ହୋଇଲା,
ସଙ୍ଗୀତ ବାଦ୍ୟନ୍ତ ଛୁଇଂ, ସବୁନ୍ତ ଓଲଗ ମେଲଇ ।୪୦।

---

* ; ବଲ୍ଲଭ ଅର୍ଥରେ ବ୍ୟବହୃତ ।

ବସନ୍ତକ ଯେ ବସିଥିଲ, ସର୍ବଣ[୭] ଠେକଇ ଶୁଣିଲ,
ଦମ ଦମ ହୃଦସ୍ଥ ତାର, କମ୍ପଇ ମନୁମଥ ଜର ।୪୧।
ବତୃରଇ କସ କରବ, ନ ଦେଖିଲେ ନିଶ୍ଚେଂ ମରବ,
ସ୍ବେଦବନ୍ଦୁଥିବ ସୁନ୍ଦେଶି ମୁଖେ,ନୃତ୍ୟନ୍ତେ କରୁଥିବ ଦୁଃଖେ ।୪୨।
ହୃଦରେ ବଳସ୍ଯେ ହୋଇ, ମୋହର ତହ୍ନିଂ ମନ ଥାଇ,
ସର୍ବ-ଜର କୁଟିଳ ଘର, ମଦନସାଯେର ମନ୍ଦର ।୪୩।
ମତ୍ତଗଜ ତାର ଚଳିବା ଠାଣି, ଦେଖିଲେ ହୃଅ ହୋଏସ୍ତୁ ହାଣି,
ଅଲପ ହସିବାର ଭ୍ରାନ୍ତି, ଦଶନ ବିଜୁଳୀର କାନ୍ତି ।୪୪।

ବାଙ୍କେ ବାଙ୍କେ ଚାହିଂବା ତାର,କେ ଅବା ନୋହିଂବ କାତର,
ତାହାକୁ କଟାଂ ଭଣ୍ଡିଲ, ମରିବା ଭରେଣ ରହିଲ ।୪୫।
ଘବ ବଚ୍ଛେଦର ଦନ, ଯେହ୍ନିଂ ମରଣରେ ହ୍ନୀନ,
ଯେତେ ବୋଲଣ ଉଠିଲ, ବାହାର ହୋଇଣ ଝୁଣ୍ଟିଲ ।୪୬।
ଚଳନ୍ତେ କମ୍ପଇ ତନୁ, ଗୁଣ ମାଜଇ କାମ ଧନୁ ,
ଚାହିଂଲ ଲୋଚକରି ବସି, ଗନ୍ଧର୍ବ ପଷ୍ଠୁଅରେ ମିଶି ।୪୭।
ମନୁମଥ ଉପରେ ପଡ଼ି, ସବୁନ୍ତ ଲଜଭସ୍ତୁ ଛାଡ଼ି,
ଗୋବନ୍ଦ ବାସେବ ବେନି, ଯେକଇ ସିଂହାସନେ ବେନି ।୪୮।

ପଦ୍ମଯୋନି ତ୍ରିଲୋଚନ, ଏସୁ ବେନି ଦେବେ ସିଂହାସନ,
ସନକାଦ ସକଳ ଋଷି, ତେତିଶ କୋଟି ଦେବେ ବସି ।୪୯।
ଚନ୍ଦ୍ର ଚାମରନ୍ତ ମଣ୍ଡି, ଚଳେଣ ଉଙ୍ଗ ପାଠ ପଢ଼ି,
ଦେବ ଋଷି ବସିଲେ ତହ୍ନିଂ, ସଭସ୍ଯେ ଯେକହୃଷ୍ଟି ହୋଇ ।୫୦।

ଦେଖନ୍ତି ବଚନ ନୃତ୍ୟ, କନରେ ଗାବନ୍ତି ଗୀତ,
ଅପସର ସମୂହେ ଉଛ୍ର, କୋଟିଏ କଳାଧର ଶେଷ । ୫୧ ।

---

୭ । ଶ୍ରବଣ ବା କାନ ।

ଦେବତାମାନେ ଦେଖନ୍ତି, କାମେଣ କଳପୁଷ୍ପ ଚଳନ୍ତି,
ଉଡ଼ଇ କର୍ପୂର ଧୂଳି, କୁଙ୍କୁମ ବରଷନ୍ତି ମିଳି । ୫୨ ।
ଷଡ଼ ଋତୁ ହୋଇଣ ଲଭ୍ୟ, କରନ୍ତି ଯେ ଯାହାର ସେବା,
ନୃତ୍ୟରସେ ଲଗିଲା ମୋହ,ସମସ୍ତେ ପାଶୋରିଲେ ଦେହ ।୫୩।
ଶୁଣ ହେ ରସିକ ଲୋକ, ଲୀଳା ଯେ ଥିଲା ବସନ୍ତକ,
ପଞ୍ଚୁଆରୁ ବାହାର ହୋଇ, ହସଇ ସୁରେଖାକୁ ଚାହିଁ ।୫୪।
ସୁରେଖା ନୃତ୍ୟ କରଇ, ଭୂଲିଣ ଉଠିଣ ବସଇ,
ବଲହକୁ ଦେଖିଲା ବାଳୀ, ଚରଣ ନ ପାରଇ ଚାଳି । ୫୫ ।
ପବନେ ଭୂଲଇ ପାଦ, ବାସବ ଭଷମ ବଷାଦ,
ଗୋବନ୍ଦ ବୋଲନ୍ତି ଦେଖି, ଯେହ୍ନେ ସେ ଅନୁରାଗେ ଲେଖି ।୫୬।
ଲୋଚନେ ଲୋଚନ ମିଳି, ଚରଣ ନପାରଇ ଚାଳି,
କୋପେ ବାସବ ବୋଲନ୍ତି,'ଶୁଣରେ ସୁରେଖା ଯୁବତୀ ।୫୭।
କେବଣ ନୃତ୍ୟର ଯେ ଗତି, କହ କେ ତୋହର ପତି,
ଗନ୍ଧର୍ବଗଣଙ୍କୁ ଚାହିଁ, କୋପେ ବୋଲନ୍ତି ସୁରସାଇଁ । ୫୮ ।
ସୁରେଖା ସୁନ୍ଦରୀର ବର, କେ ଅଛ ହୋଅ ତୁ ବାହାର,
ଶୁଣି ବସନ୍ତେକ ଅଇଲା, ଅବନୀ ଉଳଗି ଶୁଭିଲା । ୫୯ ।
ଉଠିଣ ଶିରରେ କର, ହସିଣ ବୋଲେ ସୁରେଶ୍ୱର,
ଗନ୍ଧର୍ବ ଅଧର ଦେଖ, ସୁରେଖା ଦଶନ ରେଖ । ୬୦ ।
ଶ୍ରବନ୍ତି ଅମ୍ବର ପତି, ଶବ୍ଦ ଯେ ତୋହର ପତି,
ଶୁଣି ସୁରେଖା ଅଇଲା, ଇନ୍ଦ୍ର ସମ୍ମୁଖରେ ହୋଇଲା । ୬୧ ।
ଶୋଇଲାକ ପାଦ୍ୟେ ପଡ଼ି, ଉଠିଣ ଶିରେ କରଯୋଡ଼ି,
ସର୍ବ ହେ ହୋନ୍ତି ବିକାର, ପଡିଲା ମନ୍ମଥ ଧାର । ୬୨ ।
ସୁରପତି ବହିଲା କୋପ, ଦେଲାକ ଦୁଃସହ ଶାପ,
ମର୍ତ୍ତ୍ୟାଳ ଦେଶ ରାଜନ, ସେ ଆମ୍ଭ ସମାନ ଭୁଜନ । ୬୩ ।

ତାହାର ତନୟେ ହୋଇ, ଥିବୁ ବିଚ୍ଛେଦ ଦୁଃଖ ପାଇ,
ଯାଅ ଗୋ ସୁରେଖା ବାଳୀ, ଜାତ ହୁଅ ତୁ ମହାଂଆଳୀ ।୬୪।
କର୍ଣ୍ଣାଟ ଦେଶର ରଜା, ଦୁହିଂତା ହୁଅ ତାର ଯାଯା,
ଭବଗ୍ରାହ୍ୟ ଗୋବନ୍ଦ ସ୍ୱାମୀ, ସକଳଭୂତେ ଅନ୍ତର୍ଯାମି । ୬୫ ।

ହସନ ବଦନ ହୋଇ, ବୋଲନ୍ତି ମହାବାହୁ ତହିଁ,
ଦୋଷେତ ଶାସ୍ତି ପାଇଲେ, ଦୁହେଂତ ବିଚ୍ଛେଦ ହୋଇବେ ।୬୬
ଯେବେ ଅନୁଗ୍ରହ କର, କୋପ ଉପେଖି ଦେବାବର,
ଜାତିସ୍ମର[୭] ହୋଇବେ, କାହାକୁ ବିଶ୍ୱ ନୋହିଂବେ । ୬୭ ।
ଦୁହେଂ ପୁଣ ହୋଇବେ ଯେକ, ଆମ୍ଭର ମାଗୁଣି ଯେତେକ ।
ନାମ ଯେହାର କଳ୍ପଲତା, ତହିଂବ ସୁରେଖ ବନିତା । ୬୮ ।
ବସନ୍ତକ ଗନ୍ଧର୍ବ ବୀର, ନାମ ତା ଅମର ଶେଖର,
ତିଲୋତ୍ତମାଙ୍କ ତିଆର, କହଇ କଳାନିଧି ନାସ୍ତ । ୬୯ ।
ଶାପ୍ୟ ପ ଇଣ ସେ ନାରୀବନ, ଜନମ ଲଭିଲେ ଅବନୀ,
ଧର୍ମଧ୍ୱଜ ରଜା କୁମାରୀ, ସଙ୍ଗତେ ଶତେ ପରିବାରୀ । ୭୦ ।
କୃଷ୍ଣକୁନ୍ତଳା ନଦୀତୀରେ, ଚନ୍ଦନ ବନ ଭିତରେ,
ନିତି ନ ପାହୁଣ ଆସି, ବାଲୁକା ପୂଜଇ ଛୁରୁ କେଶୀ । ୭୧ ।
କୁମାରୀ ପୂଜା ସାରିଲ। ଜଙ୍ଗମ କନ୍ତରେ ମିଳିଲ,
ସଖୀଙ୍କି ଦୂର କରାଇ, ଯେକାନ୍ତେ ବାରତା ପଚ୍ଛାଇ । ୭୨ ।
କେବଣ ଦେଶରେ ଥିଲ, କେତେକ ଦିବସେ ଅଇଲ,
କହଇ ସେ ଯୋଗେଶ୍ୱର, ଥିଲଉଂ ମଲ୍ଲାଳ ଦେଶର । ୭୩ ।
ତହିଂର ନୃପତି ସୁତ, ସକଳଗୁଣେ ବିଖ୍ୟାତ,
ଯେକା ଅବଗୁଣ ତାହାର, କେବେହେଂ ନ ଛୁଅଂଇ[୮] ନାରୀ ।୭୪।

---

୭ । ଜାତସର ।
୮ । ଛୁଅଁଇ ।

ଅମର ଶିଖରି ନାମ, ଅବମ ଅବନ୍ତି ର କାମ,
ଶୁଣିଣ ନୃପ କୁମାରୀ, ନୟନୁ ବହଇ ବାରି ।୭୫।
ଅଧର କମ୍ପଇ କାତରେ, ବୁଡ଼ିଲା ଶୋକସାଗରେ,
ଗୃହଂଣି କଳ୍ପଲତା, ଗାଇଣ ମଦନମନ୍ତ୍ର ।୭୬।
ତ ହାର ହାତେ ଯେ ଥିଲା, ପତ୍ର ସେ କୁମାରୀଙ୍କ ଦେଲା,
ଜଙ୍ଗମ ହାତରେ ଦେଇ, ଆପଣେ ପାପୁ ପଡ଼ି ଶୋଇ ।୭୭।
ମୋତେ ତୁମ୍ଭେ ସ୍ନେହେ କରିବ, ବାହୁଡ଼ିଣ ତାହାଙ୍କ ଯିବ,
ଯେଉଁକାଳେ ଦେଖିବ କୁମାର, ପତ୍ରକୁ ଦେବ ତାହାକର ।୭୮।
ତାହାର ହାତରେ ବାଉତା, ସମ୍ଭଳ ଦେଲା ସୁନା ସୂତା,
ଚଇତ୍ର ମାସର ଶେଷ, ଆଣିମ କୁମର ସନ୍ଦେଶ ।୭୯।
ନୋହିଲେ ହରାଇବ ଦେହ, କୁମର ଆଗେ ବେଗ କହ,
ଜଙ୍ଗମ ଚଳିଣ ଯାଇ, କୁମାରୀ ଅନ୍ତଃପୁରେ ଥାଇ ।୮୦।
ସେଦିନୁ କୁମାରୀ ବିରହ, କେ ତାହା କହିଂବାକୁ ରହ,
ଷୋଡଶବର ବୋଲି ଭୁବନ, ଭଜପୁ ଜଗତଜୀବନ ।୮୧।
ଜଗନ୍ନାଥ ବଲଭ ସାରି, ଲୋକ କଢ଼ାଇ ଛେରା ପାଡ଼ି,
ହୋଇଣ ଅତି ସୁବେଶ, ତକ୍ଷଣେ ହୋଇ ଅବକାଶ ।୮୨।
ଣି ଅବକାଶ ଶ୍ରୀହରି, ଚନ୍ଦ୍ରସମ ଲାଗିସାରି,
ସୁରଙ୍ଗ ପଟମ ପିନ୍ଧି, ବାମେଣ ଯମଦାଡ଼ ବାନ୍ଧି ।୮୩।
ଦଣ୍ଡୁଣା ଧଣ୍ଟାମାଳ ନାଇ, ସଞ୍ଜଧୂପକୁ ସଜ ହୋଇ,
ଉପସ୍ଥିର ବଧ୍ ସଜ୍ଜା, ସକଳ ବ୍ରାହ୍ମଣେ ପୂଜା ।୮୪।
ମନ ବଚନୁ ଯେ ବାହାର, ବିଗ୍ରହ ଗୃହ ଗ୍ରହ ଛାର,
ନୀଳଗିରି ସର୍ବଦା ବାସ, ଶରଣ ଅରଜୁନ ଦାସ ।୮୫।



# ଦ୍ୱିତୀୟ ଛାନ୍ଦ

ରାଗ—ଭୂପାଳ ଚାଣ୍ଡେକ ?

ଜମ୍ବୁ କଟକେ ବୋଲଣ ନଗର,
　　କୂପାର[1] କୂଳେ ମାଳ ମହୀଧର । ୧ ।
ନ୍ୟଗ୍ରୋଧ ନାମେ କଳପତରୁ,
　　ପ୍ରଳୟ ସରବର ଯୁଗ ମେରୁ । ୨ ।
ପ୍ରମବ୍ରହ୍ମ[2] ସେ ଦାରୁକଳେବର,
　　ରାମ-ସୁଭଦ୍ରା ସେନ ଅବତାର । ୩ ।
ନାମ ଜଗନ୍ନାଥ ଶ୍ରୀମୁଖ କଳା,
　　ବିକଚ ଶ୍ୱେତ ପଦ୍ମଂ ବେଣ ଡୋଳା । ୪ ।
ଦାସ ବତ୍ସଳ ଶୂନ୍ୟଲୋକାସ୍ୱେ,
　　ଆପଣେ ଓଡ଼ିଶାରେ ରାଜା ହୋଏ । ୫ ।
ଦଣ୍ଡ ସିଂହାସନ ଛତ୍ର ଚାମର,
　　ସର୍ବଂ ଅଧିକାର ନାହିଂ ସମର । ୬ ।
ହୃଦୟ ମଝି ବଇଠୀ ଆକାର,
　　ବେଦର ମଧ୍ୟେ ସେ ମୂଳ ଅକ୍ଷର । ୭ ।
ମଣ୍ଡେ ଅଧର ସୁରଙ୍ଗ ସୁରେଖ,
　　ଅନୁସର ଦେଖ ରତ୍ନ ତିଳେକ । ୮ ।
କୁମାର କୁମାରୀ ପାଟମହିଷୀ,
　　ସ୍ୱର୍ଣ୍ଣ ସ୍ୱର୍ଗେ ଯାର ଦାସର ଦାସୀ । ୯ ।

---

୧ । ଅକୂପାର ବା ସମୁଦ୍ର । ୨ । ପରମବ୍ରହ୍ମ ।

ସେ ଜଗନ୍ନାଥ ପଦ୍ମ ପାଦ ବାସ
ମଧୁପ ଶିଶୁ ଅରଜୁନ ଦାସ । ୧୦ ।
ଶୁଣ କଉତୁକ ରସିକଜନ,
ମଲ୍ଲାଳ ଦେଶେ ମକରନ୍ଦ ବନ । ୧୧ ।
ମଧ୍ୟ କଢ଼ ବୋଲି ନଦୀ ମଧୁମା,
ଯହିଁରେ କ୍ରୀଡ଼ା କରେ ସୁରବାମା । ୧୨ ।
କୂଳେଣି ପାରିଜାତକ କୁସୁମ,
ଜଳେ କୁଙ୍କୁମ ଗନ୍ଧ ଚନ୍ଦ୍ରସମ । ୧୩ ।
ସେ ନଦୀ କୂଳେ ମକରନ୍ଦ ବନ,
ଷଡ଼ ଋତୁ ଯେଣ ବିଜେ ମଦନ । ୧୪ ।
ମନ୍ଦ ଗନ୍ଧ ଶୀତ ବହେ ପବନ,
ବିବିଧ ଫୁଲରେ ସୁବାସ ଯେଣ । ୧୫ ।
କୋକିଳ କୁଳ କୋଳାହଳ ଧ୍ୱନି,
ଯହିଁ ସେ ଗ୍ୟାଂନ ହରିବନ୍ତ ମୁନି । ୧୬ ।
ବିଦ୍ୟା ବିନୋଦ ନାମେ ତହିଁ ରଜା,
ସକଳ ଗୁଣେ ଅବନୀ ବିଭୋଜା । ୧୭ ।
ବଇଡୂର୍ଯ୍ୟ ଗିରି ଦକ୍ଷ କଣ୍ଟକ,
କଉତୁକେ କୋଳାହଳ କଟକ । ୧୮ ।
ସୁଗନ୍ଧ ନାମେ ତା ପଟ୍ଟ ମହିଷୀ,
କ୍ଷିତି ନୃପତି ଯୁବତୀ ଯାର ଦାସୀ । ୧୯ ।
ବିନୁ ସେବନେ ବିଶ୍ୱନାଥ ମୋହି,
ତାହାର ମହିମା କେ ପାରୁ କହି । ୨୦ ।
କିବା ତାହାରେ ଦେବା ଉପମା,
ଅତି ସୁନ୍ଦର ଅମର ବାମା । ୨୧ ।

ଅମର ଶିଖର ତାର କୁମର,
ଅଙ୍ଗେ ଦଣ୍ଡିଂଲ କୁସୁମ ଶର । ୨୨ ।
ମାଳତୀ ମଧୁକର ମନ୍ତ୍ରୀ ସୁତ,
ନୃପ କୁମାର ସଙ୍ଗେ ସେହୁ ମିତ । ୨୩ ।
ଏକଇ ଶରୀର ଏକ ଜୀବନ,
ନାନା କଉତୁକେ ହରନ୍ତି ଦିନ । ୨୪ ।
ଥୋକାଏ କାଳ ଏମନ୍ତ ମତେ ଗଲା,
ରାଜା କହିକ ମନ୍ତ୍ରୀଙ୍କ ଡାକିଲା । ୨୫ ।
ଟୀକା ସାରିବା ଅମର-ଶିଖର,
ପାଟଯୋଷୀ ଦେଖି କର ବିଭର । ୨୬ ।
ଖୋଜିଣ କନ୍ୟା ଭିଆଇବା[୩] ଯାହା,
କୁମର କେବେହେଂ ନୁହଇ ବଶ । ୨୭ ।
ତାହାର ସମାନ ନ ମିଳଇ ନାରୀ,
ବଳେତ ବଶକରଣ ନପାରି । ୨୮ ।
କୁମର ସହି ବହୁତ ତିଆରି,
କୋମଳ କରି କହି କଥା । ୨୯ ।
ଲକ୍ଷେ ରାଜାଙ୍କର ଅଛନ୍ତି କୁମାରୀ,
ଯାହାକୁ ବୋଲିବ ଆଣିମା ହରି । ୩୦ ।
ନିବେଦନ କରି ଦେବେ ରାଜାମାନେ,
ସେ କଥା କିମ୍ପା ନ ପଶଇ କାନେ । ୩୧ ।
ଶୁଣିଣ ମନ୍ତ୍ରୀ ନୃପତି ଆଦେଶ,
ତକ୍ଷଣେ ଗଲା କୁମାର ଉଆସ । ୩୨ ।

---

୩ । ଏବେ ମଧ୍ୟ ଗ୍ରାମ୍ୟ ଭାଷାରେ 'ଭିଆ' ପଦ ବିବାହ ଅର୍ଥରେ ବ୍ୟବହୃତ ହୁଏ ।

ଦେଖି କୁମାର ଉଠି କୋଳ କଲେ,
ପ୍ରେମକା ଠାବେ ବେନି ଜନ ବସିଲେ । ୭୩ ।

ମଲ୍ଲାଳ ଦେଶର ତୁଅ ଗୋସାଇଂ,
ବୋଲନ୍ତ ମନ୍ତ୍ରୀ ହସ ହସ ହୋଇ । ୭୪ ।

ଠାକୁରେ ତୁମ୍ଭଙ୍କ ଟୀକା ସାରବେ,
ପାଟବଂଶୀ ଖୋଜି ବନ୍ଧ କରିବେ । ୭୫ ।

ମନ୍ତ୍ରୀ କହନ୍ତେ କୁମର ମନ ରଞ୍ଜି,
ସ୍ୱାମୀ ଆଜ୍ଞାଂ କେହୁ ପାରବ ଭାଙ୍ଗି । ୭୬ ।

ବସ୍ତ୍ର ଅଳଙ୍କାର ରତ୍ନ ବହୁତ,
ମନ୍ତ୍ରୀକି କୁମର କଲା ଅକ୍ଷତ । ୭୭ ।

ମନ୍ତ୍ରୀ ବାହୁଂଡ଼ାଇ ମିତକୁ ଘଇ,
କୁମର ହୃଦୟର କହଇ ତହିଂ । ୭୮ ।

ଶୁଣ ମିତ ମୋର ପ୍ରାଣର ବନ୍ଧୁଂ,
ମହତେ ମେଦନୀ ନ ଲଙ୍ଘଇ ସିନ୍ଧୁ । ୭୯ ।

ଗୁପତ କଥାଏକ ଅଛି ମୋହର,
ତୋତେ କହିଂବି ଯେବେ ସତ୍ୟ କର । ୮୦ ।

ଶୁଣି ମାଳତୀ ମଧୁକର ଭଣି,
ଯେମନ୍ତ କର୍ମ ଆଜ୍ଞାଂ ଦିଅ ପୁଣି । ୮୧ ।

ତୁମ୍ଭେଂ ଯେବେ ଯିବୁ ମୁଂ ତେବେ ଯିବି,
ତୋହର ପାଦେ ସେବା କରୁଥିବି । ୮୨ ।

ଶୁଣି କୁମର ସନ୍ତୋଷ ହୋଇଲା,
ଗୁପତ କଥା ମିତକୁ କହିଲା । ୮୩ ।

ଇନ୍ଦ୍ର ଗୋବିନ୍ଦ ବୃନ୍ଦେଂ ସ୍ନେହ ଘନେ,
ନୃତ୍ୟ କରିବନ୍ତି ହରଷ ମନେ । ୪୪ ।
ସୁରେଖା ନାମେ ଗନ୍ଧର୍ବ ସୁବର୍ଣ୍ଣ,
ତାହାର ମୋହର ବଡ଼ ପୀରତି । ୪୫ ।
ନୃତ୍ୟ କରୁଥିଲ ବାସବ ଆଗେ ।
ମୁହିଂ ଦେଖିତ ରହିଂଲି ସରାଗେ ।୪୬।
ପଛୁଆରେ ଲୁଚ ଦେଖଇ ମୁହିଂ
ଯୋଗେ ତା ଦୃଷ୍ଟି ପଡ଼ଲ ମୋ ତହିଂ ।୪୭।
ପୁଲକ ତନୁ ଚମକଇ ପାଦ ।
ଦେଖି ପୁରନ୍ଦର ହୋଇଲେ ବିଷାଦ ।୪୮।
ସୁଦେଷ୍ଣୀ ଗ୍ରଇ ବୋଲଇ ବଚନ ।
କେହୁଂ ନାଗରରେ ତୋହର ମନ ।୪୯।
ଭନ୍ମେ କାମେମା କଥା କଲୁ ଗୋପ୍ୟ ।
ବେଳୁବେଳ ବଢ଼ିଲ ତାର କୋପ ।୫୦।
ଆପଣେ ଗ୍ରଇ ମୋର ନାମ ଧରି ।
ଆସ ବସନ୍ତକ ବୋଲି ହକାରି । ୫୧ ।
ଉପେକ୍ଷଣ ଯାଇ କଲ ଦରଶନ ।
ଦେଖିଲେ ଅଧରେ ଦଶନ ଚିହ୍ନ । ୫୨ ।
ବୋଇଲେ ଆରେ ଗନ୍ଧର୍ବ ଅଧମ ।
ଯେତ୍କେ ସଙ୍ଗୀତ କଲୁ ମତିଭ୍ରମ ।୫୩।
ମଞ୍ଚାଳ ଦେଶ ନୃପତି ମଣ୍ଡନ ॥
ଜାତ ହୋଅ ତାର ହୋଇ ନନ୍ଦନ ।୫୪।
ସୁରେଖା ସୁଦେଷ୍ଣୀ ଯେତକ୍ଷୁ ଆସ ।

ତୁମ୍ଭେ ଜାତ ହୁଅ କର୍ଣ୍ଣାଟ ଦେଶ ।୫୫।
ଧର୍ମଧ୍ୱଜ ବୋଲି ତହିଁର ରାଜା ।
ତାହାର କୋଳେ ହୋଅ ଯା ତନୁଜା ।୫୬।
ଶୁଣି ବୋଲନ୍ତି ଦେବ ନରହରି ।
ଯେମନ୍ତ ଭବହିଁ ଭଙ୍ଗି ନ ପାରି । ୫୭ ।
ଶାପ ପାଇଲେ ଅପରାଧ କରି ।
ପୁଣି କେମନ୍ତେ ସେ ହୋଇବେ ପାରି ।୫୮।
ବାସେବ ଶୁଣି ବୋଇଲେ ରେ ବାମା ।
ମାଧବ ଅନୁରାଗେ କଲୁ କ୍ଷମା । ୫୯ ।
ତୋର ନାମ ହୋଇ କଳପଲତା ।
କେବେହେଁ ନ କରିବୁ ଆନ ଭର୍ତ୍ତା ।୬୦।
ବସନ୍ତକ ନାମ ସୁର ଶିଖର ।
ସେହିଁ ସେ ହୋଇବ ତୁମର ବର । ୬୧ ।
ଥୋକାଏ କାଳ ଭୋଗ କରୁଥିବୁ ।
ପୁଣି ସମୟେକେ ସ୍ୱର୍ଗ ଆସିବୁ । ୬୨ ।
ଧର୍ମଧ୍ୱଜ ରାଜା କର୍ଣ୍ଣାଟ ଦେଶି ।
ତାହାର ପୁରେ ଅଛୁ ଶୁକ୍ଳକେଶୀ । ୬୩ ।
କେବଣ ଉପାୟେ ପାଇବ ସଖୀ ।
ତାହାର ବଦନେ ମୁହିଁ ନିରେଖି ।୬୪।
ଯେମନ୍ତ ଚନ୍ଦ୍ରୁ ହୋଏ ରଜନୀ ।
ମଣୋହିଁ ସାରି ନିଦ୍ରା ଗଲେ ତେନି ।୬୫।
ଯହୁଁ ସେ ରାଜି ପ୍ରଭାତ ହୋଇଲା ।
କୁମର ନିତ୍ୟକର୍ମାଣି ସାରିଲା । ୬୬ ।
ମିତକୁ……………ଯେକ ଚଳି ।
ଗୁପତେ ଗଲା ବଇଡୁକ ଗିରି । ୬୭ ।

ଏବଂ ଗିଅନ୍ତି ସେ ସରବେଶ୍ୱର ।
ତାହା ସମ୍ମୁରେ ମିଳିଲ କୁମର । ୬୮ ।
କର୍ଣ୍ଣାଟ ଦେଶରୁ ଜଙ୍ଗମ ଅସି ।
ଯୋଗୀ କତରେ ଗ୍ଲଲ ମାଡ଼ିବସି । ୬୯ ।
କହନ୍ତ କଳ୍ପଲତା କଥାମାନ ।
ଶୁଣଇ ଯୋଗୀ ହୋଇ ସାବଧାନ । ୭୦ ।
ଏମନ୍ତ ସମୟେ ମିଳିଲା କୁମର
ମନ୍ତ୍ରୀ ପୁଅ ଅଛୁ ତାର ସଙ୍ଗର । ୭୧ ।
ଦୁହେଂ ପ୍ରଲମ୍ବ ହୋଇଲେକ ଯାଇଂ ।
ଆସନ ଦେଇ ସମାଶ୍ୱାସେ କହୁଂ ।୭୨।
ଶ୍ରୀ ଜଗନ୍ନାଥ କ୍ଷେତ୍ରବର ରଜା ।
ସକଳ ଭୁବନ ଯାର ପରଜା । ୭୩ ।
ଯାର ପରିବାର ଜଗତଜନ ।
ତାର ଚରଣ ଶିଶୁ ଅରଜୁନ । ୭୪ ।



# ତୃତୀୟ ଛାନ୍ଦ

( ଜୟ ଦାମୋଦର ବାଣୀରେ ଗାଇବ )

ବୋଲନ୍ତି ତ୍ରିଭୁବନ ବିବେକ ଯୋଗୀନ୍ଦ୍ର ଉତ୍ତର
ଗଚ୍ଛନ୍ତୁଂ ଆମ୍ଭ ଆଶ୍ରମକୁ କନ୍ୟା ଅଇଲୁ କୁମର । ୧ ।
ଶିରେ ବେନିକର ଯୋଡ଼ିଣ ବୋଲଇ କୁମରମଣି
ଘୁମ୍ଭୁରେ ସକଳ କହିବ ଜଙ୍ଗମର ବାରତା ଦେନ । ୨ ।
ହସିଣ ବୋଲଇ ଅବଧତ କେମନ୍ତ କନ୍ୟାର କଥା
ଜଙ୍ଗମ ବୋଲଇ ଶୁଣ ଆହେ କଳପଲତା ବେବସ୍ଥା । ୩ ।
ଜଗତମୋହିନୀ ଶିରୋମଣି ସର୍ବ ସୁଲକ୍ଷଣୀ ବାମା ।
ସକଳଗୁଣେ ଗୁଣନିଧି ଆନ ଦେଇନାହିଁ ଉପମା । ୪ ।
କୁମାର ପୂର୍ଣ୍ଣିମୀ ଶଶଧର ପ୍ରସନ୍ନ ବଦନ କାନ୍ତି ।
କୁରଙ୍ଗୀନୟନ କଟାକ୍ଷକୁ ସୁଷମା ଯେତେକ ଭ୍ରାନ୍ତି । ୫ ।
ସୁଗନ୍ଧ ମଧୁର ଲୁବ୍ଧେଣ ଭ୍ରୂଲତା ମଧୁପ ପନ୍ତି ।
କପୋଳେ ମଦନ ଫଳ କସେ କସ୍ତୁରୀ ତିଳେକକାନ୍ତି । ୬ ।
ସୁନାସା କୁଟିଳ କବେଶ କଳା ମନସିଜର ଦ୍ରୋଣ ମାଳା ।
ସୁରଙ୍ଗ ଅଧର ବନ୍ଧୁଲିଫୁଲ କୌମୁଦୀ ଦନ୍ତ ରୁଚିର । ୭ ।
ବହଇ ବଚନେ ମୃତ୍ୟୁସଞ୍ଜୀବନୀ ମଧୁର ପିକର ବାଣୀ ।
କନକ କଳସ କମନୀୟ ନିନ୍ଦଇ ମଧୁପ ଶ୍ରେଣୀ । ୮ ।
କଳପଲତା ଶାଖା ଭୁଜ ବେନି ମଧ୍ୟ କେଶରୀ ଠାଣି ।
ନିତମ୍ବ ମଦନ ସିଂହାସନ ତ୍ରିଭୁବନ ସାର ତରୁଣୀ । ୯ ।

ଜଘନ ମତ୍ତବାରଣ ଚରଣ ସ୍ଥଳକମଳ ।
ଜଙ୍ଘକୁ କଦଳୀ ଜାନୁ ଦେଖି ଲାଜେ ବାଡ଼ଜଣି ସରଳ । ୧୦ ।
ସଙ୍ଗେ ଶତେକ ପରିବାରି ନିତ୍ୟେ କରନ୍ତି ସେବା ।
ତାହାଙ୍କର କିଅଁତ କଟାକ୍ଷେ ଜାଣର ନିଦଶ ଦେବା । ୧୧ ।
ପିଅର ଅନେକ ନୃପତି ପୁରେ ବର ଖୋଜନ୍ତି ଯାହା ।
କୁମାରୀ କେତେବେଳେହେଂ ନ ବରଇ କାହାକୁହେଂ ନୁହଇ ବଶ । ୧୨ ।
କୃଷ୍ଣକୁନ୍ତଳା ନାମେ ନଦୀ ତାଙ୍କର ଗଡ଼ରେ ଯାଇଂ ।
ତହିଁବେ ପୂଜନ୍ତି ମହାଦେବ ବହୁତ ବିନୟ ହୋଇ । ୧୩ ।
ସେ ନଦୀ ତୀରରେ ଭୁବନେଶୀ ପୂଜା କରଇ ବସି ।
କୁମାରୀ ପୂଜା ସାରିଣ ପ୍ରମୋଦରୁ କଟକ ଆସି । ୧୪ ।
ଉଳଟ ମଣ୍ଡଳର ରାଜା କୁମାରୀ ବୋଲଇ ଶୁଣ ଗୋସାଇଂ ।
କେଉଁଣ ଦେଶର ରାଜାର ଦେଶମାନ ଅଛ ଭ୍ରମି ଯାଇଂ । ୧୫ ।
ଆମ୍ଭେ ବୋଇଲୁରେ ସ୍ୱଦେଶ ବୁଲିଲୁ ବହୁତ ଦେଶ ।
ତୁ ଜମ୍ମା ଯେତେକଥା ସନ୍ଧରୁ ସେ ଶଣେ ବୋଲୁ କାହିଁ କିସ । ୧୬ ।
କୁମାରୀ ବୋଲିଲେ ଯୋଗେଶ୍ୱର ମାଗିଲୁ ବୋଲି ନବର ।
କେଉଁଣ ଦେଶେ ବସେ ଜନ୍ମେକ କେ ତାହାଂ ନୃପବର । ୧୭ ।
କହିଲୁ ମଧ୍ୟ ନଦୀ ତୀରେ କୋଳାହଳ କଟକ ନାମ ।
ବଇଡ଼ୂର୍ଯ୍ୟ ଗିରି ନିକଟେଣ ମକରନ୍ଦ ବନ ଉପାମ । ୧୮ ।
ନୃପତି ନାମ ଛନ୍ଦ୍ୟା ବିନୋଦ ସୁଗନ୍ଧା ମହାଦେବୀ ତାର ।
ପୁତ୍ରେକ ତାଙ୍କର ଜୟଜିତ୍ତୁ ନାମ ଅମର ଶିଖର । ୧୯ ।
ରାଜା ପରଜା ତାହାଂ ସେତୁଂ ମଞ୍ଜୁ ମେଦନୀମଲ୍ଲ ।
ତ୍ରିଭୁବନ ମଧ୍ୟେ ଶିରୋମଣି ଅଇଶ ଉର ଶଲ । ୨୦ ।
ମାଳତୀ ମଧୁକର ବୋଲିଣ ମନ୍ତ୍ରୀର ସେବକଇ ସୁତ ।
ମେଦିନୀରେ ମଦନ ମୂରତି ଜଗେ ନୃପତି କୁମର ମିତ । ୨୧ ।

ଯେମନ୍ତେ ରସ କୁତୁକେ ବଞ୍ଚନ୍ତି ଏବା ରଜନୀ ।
ନୃପତି କୁମର ଯେବକା ଅବଗୁଣେ କେବେହେଁ ନ ହୁଟଇ କାମେମ୍
ଶୁଣିଣ ସୁନ୍ଦେଶ୍ୱ ଅଧର କମ୍ପଇ ପୁଲକଇ ଅଙ୍ଗ ।
ଲୋଚନୁ ଲୋତକ ନଚଳନ୍ତେ ଗୁଣ୍ଡିଲୁ ସଖୀଙ୍କ ସଙ୍ଗ । ୨୩ ।
ଯେବକାନ୍ତେ ମୋହର ଚରଣ ଧରି ପ୍ରଳମ୍ବ କରି ଶୋଇ ।
ଉଠିଣ କର ଦୁଇ ଯୋଡ଼ି ବନପୁ ହୋଇଣ କହୁଁ । ୨୪ ।
ଭୋ ଗୁରୁ ବଚନେକ ବୋଲିବଇଁ କେବେହେଁ ନକରିବନାହିଁ
ମୋହର ସନ୍ଦେଶ ଚଷପଟ୍ଟ କୁମରଙ୍କୁ ଦେବ ନେଇ । ୨୫ ।
ମନ୍ତ୍ରୀକୁମାରୀ ମଦନମଞ୍ଜ୍ରୀ ବିଶ୍ୱାସ ସଖୀ ତାହାର ।
ତାହାର ହାଥେ ଥାଇ ଚଷପଟ୍ଟ କେବେହେ ନ କରଇ ବାହାର
ଇନ୍ଦ୍ର ଗୋବନ୍ଦ ପାଟ··· ··· ···ବିବଧ ରଙ୍ଗ ଜଡ଼ ।
ସୁରଙ୍ଗପାଟ ଡୋରେକ ବାନ୍ଧ ଚନ୍ଦନେ ମୁଦପାଡ଼ି । ୨୬ ।
ସଖୀକ କଣ୍ଠକ ବାଇଣ ଦେଲ ତାହାର କରେ ।
ମୋର କଣ୍ଠରେ ପଟ୍ଟ ଦେଇଣ ବୋଇଲୁ ଚଳ ଏସ ପୁରେ ।୨୮
ଚଇତ୍ର ଶୁକଳ ପୌର୍ଣ୍ଣମୀ ଦବସ ଅବଧି ମୋର ।
କୁମର ସନ୍ଦେଶ ନପାଇଲେ ମରିବ ଶପତ ତୋର । ୨୯ ।
ଆଇଲା ମକରମାସ ସପତମୀ ମୀନ ସମ୍ପୂର୍ଣ୍ଣ ହୋଇଲୁ ଆସି ।
ଚଇତ୍ର ମାସ ଆସି ହୋଇଲୁ ଶେଷ ଶୁକଳ ଚତୁର୍ଦ୍ଦଶୀ । ୩୦ ।
ଶୁଣିଣ କୁମର କାତର ହୋଇ ପଡ଼ିଲୁ ମୋହ ଯାଇ ।
ସୁବର୍ଣ୍ଣ ଝଙ୍କରେ ନୀର ଦେନ ମନ୍ତ୍ରୀ କୁମର ସିଞ୍ଚଇ । ୩୧ ।
ଅମର ଶିଖର ଚୈତନ୍ୟ ପାଇ କାରୁଣ୍ୟ କହଇ ବାଣୀ ।
ଅବଧି ଯେବକ ଦବସ ହୋଇ କେମନ୍ତେ ଜିଇବ ତରୁଣୀ । ୩୨ ।
ବୋଲନ୍ତି ଯୋଗୀ ସର୍ବେଶ୍ୱର ଦେଖିବା ଚଷପଟ୍ଟ ।
**ଗୋରେଖ ପ୍ରସାଦେ** କୁମାରୀକ କୁମର ହୋଇବ ଭେଟ ।୩୩

ଜଙ୍ଗମ ଶଙ୍ଖପଟ୍ଟ କାଢ଼ିଣ ଦେଲା କୁମର କରେ ।
ଘେନିଣ କୁମର··ଶଙ୍ଖ · ପଟ୍ଟ ଗୃହିଲ ହୃଦରେ । ୩୪ ।
ମୁଦ ସ୍ପର୍ଶିଣ ଫେଡ଼ଇ ଡୋର ଦେଖଇ ଶଙ୍ଖପଟ୍ଟ ।
ଇନ୍ଦ୍ର ଗୋବିନ୍ଦ ପ୍ରମୁଖ ଆପଣେ ଦେଖନ୍ତି ସୁରେଖା ନାଟ ।୩୫।
ସୁବେଶ ହୋଇଣ ସୁରେଖା ନୃତ୍ୟ କରଇ ରଙ୍ଗେ ।
ସଙ୍ଗୀତ ସକଳ କିନ୍ନର ମିଳି ଦେବଙ୍କ ଆଗେ । ୩୬ ।
ବହନ୍ତିକ ନମେଣ ଗନ୍ଧର୍ବ ସୁରେଖା ଯୁବତୀ କାନ୍ତ ।
ବଳଦ୍ୱ ବଦନ ଦେଖି ବାଳୀ ହୋଇଲେକ ଖେଳ ମତ୍ତ । ୩୭ ।
ପୁଲକ ସକଳ ରୋମାବଳୀ କେବେହେ ନଚଳଇ ପାଦ ।
କୋପେଣ କମ୍ପଇ ସୁନାଶିର ଦେଲାତ ଶାପ୍ୟ ପ୍ରମାଦ । ୩୮ ।
ଦେଖିଣ ଆକୁଳ କୁମରମନ୍ତ୍ରୀ ନୟନୁ ବହଇ ନୀର ।
ଯୋଗୀ ଚରଣ ଧରି ଲୋଟଇ ମୋତେ ପ୍ରତିକାର କର । ୩୯ ।
କୁମର ତୋଳିଣ ସର୍ବେଶ୍ୱର କୋଳେ ବସାଇଲେ ନେଇ ।
କର୍ଣ୍ଣେଣ ମୃତ୍ୟୁଞ୍ଜୟ ମନ୍ତ୍ର କହିଲ ବିଭୂତି ମୁଠାଏ ଦେଇ ।୪୦।
ବିଭୂତି ଶିରେଣ ଫଳେକ ଦେଲେ ସ୍ୱ ଭୁବନକୁ ଯାଇ ।
ଯେତେବେଳେ ଯାହା ଲୋଡ଼ିବା ତକ୍ଷଣେ ସକଳ ପାଇ । ୪୧ ।
ଅନେକ କାଳରୁ ଯେ ମୃତ୍ୟୁଗତ ମୃତ୍ତିକା ପ୍ରତିମା ଥିବ ।
ଏ ମନ୍ତ୍ର କର୍ଣ୍ଣେ କହନ୍ତେଣ ଜୀବନ ପାଇ ଉଠିବ । ୪୨ ।
ସାନନ୍ଦ ହୋଇଣ କୁମର ସୁଲକଣ୍ଠି ସକଳ କାପେ ।
ଜଙ୍ଗମ ସହିତେ ସଙ୍ଗ ଘେନି ନିଜ ନଗରକୁ ଆପେ । ୪୩ ।
ଉତ ଭାରଣ ଜଗନ୍ନାଥ ନୀଳଗିରି ନରେନ୍ଦ୍ର ।
ବୋଲଇ ଶିଶୁ ଅରଜୁନ ସଂସାର ତିମିର ଚନ୍ଦ୍ର । ୪୪ ।



# ଚତୁର୍ଥ ଛାନ୍ଦ

ରାଗ—ବସନ୍ତ ଭଇରବ

ଯେଥୁ ଅନନ୍ତରେ ଧର୍ମଧ୍ୱଜ କୁମାରୀ ।
ପଛେ ଦେଖିଣ ନିଜ ପୁରେଣ ବାହୁଡ଼ି
ସଙ୍ଗେ ତା ସକଳ ପରିବାର ଜନ ।
ନିଜ ନିଳୟରେ ପ୍ରବେଶ ତାର ଉଦାସ ମନ ।
ଚିନ୍ତାଭି ଲାଗି ହୋଇଣ ଯୁବତୀ ।
ଏକା ହୋଇଣ ଯାଇ ଶୁତିଲା ସୁପାତି ॥ ୧ ॥

ହୃଦରେ ଗୁଣଇ ବଳଦ୍ୱର ଗୁଣ ।
କ୍ଷଣେ କ୍ଷଣେ ଦହଇ ମନ୍ମଥ ବାଣ ।
ଛାଡ଼ିଲା ସକଳ ସୁଖ ଭୋଗ ଚିନ୍ତା ।
କାନ୍ତରେ ବସିଥାଇ ସଖୀ ମଦନ ମତ୍ତା ॥
ଗୁପତ ବେଦନା ତାର ନ ଜାଣେ କେହ୍ନି ।
ସୁରଙ୍ଗିଟରେ ମନ ଦେଇ ହୋଇଲା ବିରହୀ ॥୨॥

ଦୀନହୀନ ତନୁ ତାପେ ଆକୁଳ ।
କତ ଲୋକଙ୍କୁ ନ ଚାହଇ ବାଳୀ ॥
କଥା ପଚାରିଲେ ଆନୁଆନ କହି ।
କୁରଙ୍ଗୀ ନୟନୁ ଲୋତକ ନିରନ୍ତରେ ବହି ।
ଅବନୀ ତେଜି ନୟନ ସୁପାତି ।
ଦିବସେ ସଖୀ ବଞ୍ଚଇ ଯୁଗ କଟେ ରାତି । ୩ ।

ନାନା ପରିମଳ ଦେଇ ବହଇ ପବନ ।
ବାନ୍ଧି ପରାଣେ ଦହଇ କୁମାରୀର ମନ ।
ଚନ୍ଦ୍ର କିରଣ କି ସେ ଗରଳର ସମ ।
କ୍ଷଣେ କ୍ଷଣେ ତନୁ ଘାରଇ କାଳ ହୋଇଲା କାମ ।
ହେମ କରଣ ଅଙ୍ଗେ ଅନଳ ଜାଳା ।
କର୍ପୁର ଘନର ଚନ୍ଦନ ଚିତ୍ତ ଭ୍ରମକଇ ବଳା ।୪।

ଶେଷ ପ୍ରାୟେକ ମଣଇ ସେ ରମଣୀ ।
କର୍ଣ୍ଣ ଦୁଇ ବୁଜଇ ଶୁଣିଲେ ପୀକବାଣୀ ।
ପରିବାରୀ କେହୁ ପୁରରେ ନପଶି ।
ମଦନମତୀ ସଖୀ ସଙ୍ଗତେ ବଞ୍ଚଇ ଦିବାନିଶି ।
ନିତ୍ୟକର୍ମମାନ ସେ ଯେତେ କରୁଥିଲା ।
ଜଙ୍ଗମ ହାତେ ପଠ ଦେଇଂ ସବ ପାଶୋରିଲା । ୫ ।

ସବୁ ପରିବାରୀମାନେ ବ୍ୟାକୁଳ ହୋଇ ।
ମହାଦେବଙ୍କ ଆଗେ ଜଣାଇଲେ ଯାଇ ।
କୁମାରୀ ବାରତା ବିରହ ଅକୁଳ ।
ସାବଧାନ ହୋଇ ଶୁଣିଲେ ଜନନୀ ସକଳ ।
ଆପଣେ ବିଜେ କଲେ କନ୍ୟା ପୁରେ ।
ଭୂମିରେ ଶୋଇଛନ୍ତି ଶୁଭ୍ରକେଶୀ ମାଏ ଦେଖିଲେ ଦୂରେ ।

ଧାଇଁଯାଇ ମାଏ କୋଳ କରି ତୋଳି ।
ସୁବାସିତ ଜଳ ଦେଇ ଶ୍ରୀମୁଖ ପଖାଳି ।
କନ୍ୟା ଖୋଜି କୋଳ କରି ବସି ।
ଆପଣା ନୟନୁ ଲୋତକ କୁଚ କୁମ୍ଭରେ ବରଷି ।
କହନ୍ତି ଜନନୀ ଶୁଣ ଆଗୋ ମାଏ ।
ଅଳପଦିନ ଥିବ ହୁଅ ଅଶିଣ ମାସ ଯାଏ ।୬।

ସକଳ ବିଷାଦ ଛଡ଼ାଇବ ତୋର ।
ପରମୁଣ୍ଡା ଯିବ ମୋର ପ୍ରାଣର ଈଶ୍ୱର ।
ମନେ ଆନ କିଛି ନ ଧର ଅନ୍ତର ।
ତୋହର ସାଦୃଶେଣ କର ଆଣିବ ବର ।
ମଦନମନ୍ତ୍ରକୁ ଘେନି ମହାଦେଇ ।
କ୍ଷଣେ କନ୍ୟାର କଣ୍ଠରୁ ନଗ୍ଧଡ଼ିବ ଭୂହଂ ।।୮।।
ତକ୍ଷଣେ ମହାଦେଈ ଗଲେ ରାଜା ପାଶ ।
କୁମାରୀ ବିରହ କହନ୍ତି ବିଶେଷ ।
ଶୁଣ ସ୍ୱାମୀ ତୁମ୍ଭର ଦୋହଂତା ବେଦନା
ଦିନେ ଦିନେ କ୍ଷିଣ ହୋଇଲା ଆଜ ନ ବଞ୍ଚିଇ କନା ।
ସମ୍ଭବେ ସୁନ୍ଦରୀ ଯଉବନ ଭର ।
କୁସୁମ ଶରର ଅଙ୍କୁଳ ସେ କ ସହଂପାର ।।୯।।
ଶୁଣିଣ ବିଷାଦ ହୋଇଲେ ନୃପତି ।
ପ୍ରତାପ ପଞ୍ଚାନନଙ୍କ* ହକାରିଲେ କତି ।
ସକଳ ବେଦନା କହଂଲେ ତାହାକୁ ।
କୁମାରୀ ରୂପଟୁଣ ସମ କରିବା କାହାକୁ ।
ଭଗର ପେଷିଣ ଖୋଜ ବେଗେ ବର ।
କୁଳେ କଳଙ୍କ ଉଦ୍ଧୃଜବ ବିଳମ୍ବ ନକର ।।୧୦।।
ଶୁଣିଣ କୁମର ଅସ୍ତ୍ରାନକୁ ଗଲ ।
ଚ୍ୱର ଦିଗକୁ ଦୂତ ବରଗିଲା ।
ନାନାଦେଶେ ପଶି ଖୋଜିଲେକ ବର ।
ତ୍ୱରିତେ ଆସି ଜଣାଇଲେ କୁମର ଛାମୁରେ ।
ଗୈଡ଼ମଣ୍ଡଳେ ନୃପ ପୁରନ୍ଦର ।
ଅବଗାଡ଼ଲେକ ବୋଲି ତାହାର କୁମର ।।୧୧।।

---

* ପର୍ବ୍ବଣ (ପୋଥିପାଠ)

ଧୀର ବୀର ଅଟ୍ଟ ଗୁଣେ ରତ୍ନାକର ।
ନବ ରସେ ଭୋଗୀ ରୂପେ ଅନୁହର ।
ଯୁବା ଯୁବତୀଙ୍କ ମନ ବନ୍ଧତାର ।
ସକଳ ଗୁଣେ ସମ୍ପୂର୍ଣ୍ଣ ବିଳମ୍ବ ନକର ।
କନ୍ୟା ରୂପକୁ ଅନୁରୂପେ ସେହିଂ ।
ଅବଧି ଆନ ପଟ୍ଟାନ୍ତର ଦେଖିଲ ନାହିଂ ॥୧୨॥
ଶୁଣିଣ ସାନନ୍ଦ ହୋଇଲ କୁମର ।
ଜଣାଇଂଲ ଯାଇ ନୃପତି ଛାମୁର ।
ଭଗବତ୍ୟେ ଖୋଜି ଅଇଲେକ ବର ।
ମୁହିଂ ଆପଣେ ବରଯିବ ବିଭା ସମ୍ଭାର କର ।
ଶୁଣିଣ ସନ୍ତୋଷ ହୋଇଲେକ ରାଜା ।
ନକରେ ହେ ଜେମା ନଜାଣିମ ବରଆଣ ତୁ ଯା ଯା ।୧୩
ବାଜନ୍ତ୍ରକ ନିଶାଣ ସକଳ ବୀରତୂର ।
ମଇନ ବଦାଇବାକୁ ବରଯେ କୁମର ।
ଗୈଡ଼ମଣ୍ଡଳ ନୃପତି ପୁରନ୍ଦର ।
ଅବମୀତଲେକ ବୋଲ ତାହାର କୁମର ।
ଚତୁରଙ୍ଗ ବଳ ସଜ ହୋଇ ଅଇଲ ।
ପିତାଙ୍କୁ ପ୍ରଣାମ କରି କୁମର ବିଜେ କଲ ॥୧୪॥
ସାଙ୍ଗେଣ ସାବ ପୁରୋହିତ ଅମାତ୍ୟ
ରତ୍ନ ଅଲଂକାର ବସନ ବହୁତ ।
ପାଟ ଜଇତଫ ନେଟ ମୂଳ ?
ପାର ହୋଇଯାଇ ରହିଂଲେ କୃଷ୍ଣକୁନ୍ତଳା ନଦୀ ତୀର ।
ଗୈଡ଼ମଣ୍ଡଳ ନୃପତି ଆଗେ ।
ଆଗ ହୋଇ ଦେଶଗୃର ଜଣାଇଲେ ବେଗେ ॥୧୫॥

ସାବଧାନ ହୋଇ ଶୁଣିମା ଗୋସାଇଁ ।
ଅବନ୍ତୀ ନଗରକୁ ବରଦ୍ୱାର ପାଇଁ ।
କର୍ଣ୍ଣାଟ ଦେଶ ନୃପତି କୁମର ଆଗତ ।
ଉପତ ହୋଇ ମହାରାଜେ ଅତି ସନ୍ତୋଷ ଚିତ୍ତ ।
ଟମକ ଦିଆଇ ଥାଟ ସଜ କଲେ ।
ପାଶ୍ଚେଟି ଯାଅ ବୋଲି କୁମରଙ୍କୁ ଆଗ୍ୟାଂ ଦେଲେ ॥୧୬
ଯନ୍ତୁଂ ସେ କଟକ ହୋଇଲ ନିକଟ ।
ଦୁଇବଲ ବାଟେ ହୋଇଲେକ ଭେଟ ।
ଦୁଇ ଯୁଗ ରଜା ଯାନରୁ ଓହ୍ଲାଇଲେ ।
ତୁହେ ଦୁହିଂକ କୋଳ କରି ହାଥୀ ଲଗି ହୋଇଲେ ।
ନାନା ବଜତୁରେ କୁହାକୁହିଂ ହୁଅନ୍ତି ।
ଚଉରଙ୍ଗ ବଳ ବଣ୍ଡମି ପନ୍ଥ ବହୁଂ ଯାନ୍ତି ॥ ୧୭ ॥
କଟକ ମୁରାଟେ ଲଗାଇଲେ ଯାଏ ।
ଅପଣେ ଅସ୍ଥାନେ କଲେକ ବିଜୟେ ।
ବେନି କୁମର ଯେ ବିଜେ କରି ଗଲେ ।
ନୃପତିଙ୍କ ସିଂହାସନରେ ପ୍ରଣାମ କଲେ ।
ଶିରେ କର ଦେଇଣ ହୁଅନ୍ତି ଉଭା ।
ଯେହେନ ଦଶରଥ ଗୁମୁରେ ରାମ ଲକ୍ଷ୍ମଣ ଶୋଭା ॥୧୮॥
କୁମରଙ୍କୁ କୋଳ କରିଣ ନୃପତି ।
ସିଂହାସନେ ନେଇ କଡରେ ବସାନ୍ତି ।
ବୋଲନ୍ତି ଯେବେ ସେ ସୁଫଳ ଜୀବନ ।
ଆଜୁ ହୋଇଲ ପାଟେ ଦୁଇ ଯେବେ ସିଂହାସନ ।
ଧର୍ମଧ୍ୱଜ ରଜା ଆମ୍ଭର ପିଅରୁ ।
ଆଜୁ ବୋଲାଇ ତୁହେଂ ଚନ୍ଦ୍ରମଣ୍ଡଳେଶ୍ୱର ॥୧୯॥

ଏକୁ ସ୍ନାହାନ କରାଇଲା କୁମର ।
ପାନ ଖାଇ ଖଟେ ବୋଲନ୍ତି ଉତ୍ତର ।
ଯେ ଯାହା ମାଗଇ ତାହା ତେତେବେଳେ ଦିଅ ।
ଅପଣେ ଥାଇ କୁମରେ ମଣୋହି କରାଅ ।
ଅଗ୍ୟାଂ ଦେଇ ଖଟେ ହୋନ୍ତି ଅବକାଶ ।
ରଯୁନ ? ଗହଲ ଚହଲ ଓଡ଼୍ର ମଣ୍ଡଲ ଦେଶ ॥୨୦॥

ଯେଣୁଁ ଅନନ୍ତରେ ଧର୍ମଧ୍ୱଜର କୁମର ।
ଦିନା ଚୃର ରହି ଉହ୍ନାଂ ବରିଲେକ ବର ।
ଚନ୍ଦନ କୁସୁମମାନ ସର୍ବ ଅଲଙ୍କାର ।
ଶୁଭ ଲଗ୍ନ ଯୋଗକର ଗ୍ରହଚନ୍ଦ୍ର ତାର ।
ଅନକୂଳ କରେଣ ବାହାର ହୋଇଗଲେ ।
ତୁଙ୍ଗଭଦ୍ରା ନଦୀକୂଳେ ସେ ଦିନ ରହିଲେ ॥୨୧॥

ରଜନୀ ପ୍ରଭାତେ ଚଳିଗଲେ ଥାଟ ।
ଗହଳେଣ କେହି ନ ପାବନ୍ତି ବାଟ ।
ଖୁର ରେଣୁ ଧାଯେ଼ ଲୁଚିଲେ ଆକାଶ ।
ଦିନ ହୋଯେ଼ ଅନ୍ଧାର ନଦିଶଇ ଦିଶ !
ପନ୍ଥ ହାଣିଲା ତନ୍ଥ ହାତେ ଲଗାନ୍ତି ।
ବସାକୁ ବସା ରହି ଚଳି ଯାଉଛନ୍ତି ॥୨୨॥

କ୍ଷଣକେ ପୁଲକେ କ୍ଷଣକେ ରହ୍ଵବର ।
କ୍ଷଣେ ଘୋଡ଼ା ଲଗି ହାଥୀର ଉପର ।
କ୍ଷଣକେ କଉତୁକେ ପାରୁଆ ଉଡ଼ାନ୍ତି ।
ଘଦାଭୂମି ଦେଖି ଘୋଡା ଖୁର କରି ଯାନ୍ତି ।
ବେଣ୍ଟକାରେ ଜୀବନ୍ତ ଜୀବନ୍ତା ଧରନ୍ତି ।
ଅବଧାନ ଦାନ ଦେଇ ଖଟେ କରି ଯାନ୍ତି ॥୨୩॥

କର୍ଣ୍ଣାଟ ସୀମାରେ ପଶିଲେକ ଥାଟ
କାଅଳେ ଭୂଧର ହୋଇଲେ ନିକଟ ।
କୃଷ୍ଣକୁନ୍ତଳା ନଦୀର ତୀରେ ଯାଇ ।
ଚନ୍ଦନ-ବନ ଭିତରେ ପାର ହୋଇ ରହି ।
ଫଟିକ-ମଣ୍ଡପ ଅଭ୍ୟନ୍ତରୁ ଜଡ଼ିଲ ।
ଯହିଂ ସେ କଳ୍ପଲତା ଶମ୍ଭୁ ପୂଜା କଲ ॥୨୪॥
ଦୁଃଖ ନାଶନ ହେ କଠକର ଲେକ ।
ଧୁଆଂ ଧୁଇଂ* ହୁଅନ୍ତି ଶୁଣିଣ ଠମକ ।
ଦୂର ଜଣାଇଲେ ଧର୍ମଧ୍ୱଜ ରାଜ୍ୟେ ।
ମିତକୁ ଦେଖା କୁମର କଟକରେ ହୋଯ୍ୟେ ।
ଶୁଣି ତା ନୃପତି ମନ୍ତ୍ରୀ ବୁଦ୍ଧିସାଗର ।
ଜଣେ ଜଣେ ବସା ଯୋଗାଡ଼ ବେଗେ କର ॥୨୫
ବିଭାର ସମ୍ଭାର ସବୁ ଅଛି ହୋଇ ।
ବେଦୀ ସ୍ନାମୁଣ୍ଡିଆ ମଣ୍ଡଣି କରନାଇ ।
ଘରେ ଘରେ ଚଣ୍ଡ କଳସ ପାତଙ୍ଗ ।
ବାଜି ଯନ୍ତ୍ରୁକ ଦେବା ଶତେ ନାଗ ।
ଆଗ୍ୟାଂ ଦେଇ ରାଜ୍ୟେ ଭିତରେ ପ୍ରବେଶ ।
ପାଟ ମହାଦେଇ ସୁଶୀଳା ଦେଖି ହସ ହସ ॥୨୬॥
ସେକାନ୍ତରେ ରାଜା ରାଣୀଙ୍କି କହିଲ ।
ବର ଦେଖଣ ଗୋ କୁମର ଅଛିଲ ।
ଚନ୍ଦନ ବନ ଭିତରେ ରହିଅଛି ଆସି ।
କାଲ ଦ୍ରଶନେ କରିବେ ପାହିଲେଣ ନିଶି ।
ଶୁଣି ମହାଦେଇ ସନ୍ତୋଷ ହୋଇଲ ।
ଅଜକୁ କଲପଲତାର ଅବସ୍ଥା ସରିଲ ॥୨୭॥

---

* 'ଧୂଆଁ ଧୂଇଂ' ପଦର ପ୍ରୟୋଗ କବିଙ୍କ 'ରାମବନ୍ସ' କାବ୍ୟରେ ମଧ୍ୟ ମିଳେ, ପ୍ରାଚୀ ସଂସ୍କରଣ ପୃ ୬୩, ୯୮, ୧୦୫

ପାହିଲ ରଜନୀ ଉଦେ ଦିବାକର ।
ଷଟ୍‌କର୍ମମାନ ସାରିଲେ କୁମର ।
ବାହୁଲଗି ହୋଇ ଚଳିଲେକ ବେନି ।
ବୀର କାହାଳୀ ବାଜିଲ ଚଳିଲ ସଇନୀ ।
ଚନ୍ଦ୍ରଶାଳାପୁରେ ଚନ୍ଦ୍ରଶାଳାପୁର ମଣ୍ଡାଇ ।
ବିଜେ ଧର୍ମଧ୍ୱଜ ନରେନ୍ଦ୍ର ସବୁ ଲୋକନ୍ତ କହାଇ ॥୨୮
ସିଂହଦ୍ୱାରେ ଯାଇ ବାହୁରୁ ଓହ୍ଲାଇ ।
ଦୁଇ ମଇଳ ହାଥ ଧରାଧରି ହୋଇଂ ।
ପାଳଦ୍ୱାର ତେଜି ଭିତରେ ପଶିଲେ ।
ନିଜସ୍ଥଳ ପକାଇ ରାଜାଙ୍କୁ ଦର୍ଶନ କଲେ ।
ଅବନୀ ତିଳେକକୁ କୋଳ କରି ରାୟେ ।
ଯେନି ନେଇ ସିଂହାସନ ଉପରେ ବସାୟେ ॥୨୯॥
କୁମରଙ୍କୁ କଲେ କତେକ ଶ୍ରୀହାନ ।
ରତ୍ନ ଅଲଙ୍କାର ଦେଖା ଯେ ଦର୍ଶନ ।
ବଟିଶ ନବରେକ ଦେଲେ ନେଇ ବସା ।
ସକଳପୁରେ ପୂର୍ଣ୍ଣକୁମ୍ଭ ଚୂତଡାଳ ଖୋସା ।
ପସରା କାଢିଲେ ରତ୍ନମଣ୍ଡଳ ଲୋକ ।
ହୀରା ମାଣିକ୍ୟ ବିକା ବଣିଜାର ଥୋକ ॥୩୦॥
ଶ୍ରୀ ଜଗନ୍ନାଥ ଜଗୁଜନର କର୍ତ୍ତା ।
ଜଗତଜନନୀ କମଳଣୀର ଯେ ଭର୍ତ୍ତା ।
ଯୋଗିଜନମାନେ ଯାହା ଧ୍ୟାନରେ ନିରେପି ।
ଜଳଧି କୂଳେ ଅବତାର ଦାରୁ-ରୂପୀ ।
ସକଳ ଭୁବନେ ଯାର ନିବାସ ।
ଶ୍ରୀ ଜଗନ୍ନାଥଙ୍କ ଚରଣ ଶରଣ ଅରଜୁନ ଦାସ ॥

---

# ପଞ୍ଚମ ଛାନ୍ଦ

### ଯୋଗୀ ସମଜାଇ ଯେ ? ବାଣୀରେ ଗାଇବ ।

ସେଥୁ ଅନନ୍ତରେ ମହାଦେବଙ୍କ କୁମର କନ୍ତକ ରାଇ ।
ସକଳ ରାଜାଗଣମାନଙ୍କୁ ନିମନ୍ତ୍ରଣ ସାମନ୍ତ ଯାଇ । ୧ ।
ଛାମୁଣ୍ଡିଆ ଆକାଶ ମଣ୍ଡି କର ଚାର ଘର ଲଆଅ ।
କଟକ ମୁରାଟକ ରାଇନ ଭୋଜନ ସମ୍ଭାର ଭିଆଅ । ୨ ।
ଆଜ୍ଞା ପାଇଣ କୁମରମଣି ତକ୍ଷଣେ ବାହାର ହୋଇ ।
ପାତ୍ରଙ୍କୁ ଆଜ୍ଞା ଦେଲେ ରାଏ ଯେମନ୍ତେ ସକଳ ହୋଇ । ୩ ।
ଯେମନ୍ତେ କେତେହେ ଦିନାନ୍ତରେ ହୁଅର ଅନେକ ଥାଟ ।
ନୃପତି ନଅବକାଶ ସେ ଦେଖିଲେ କଳପଲତା ଯାଉ । ୪ ।
ମହାଦେବଙ୍କ ହକାର ରାସେ କୁମାରୀକ କନ୍ତକ ରାଅ ।
କାଲି ଯେ ବିଭା ହୋଇବାକୁ ମଣାଇ କନ୍ୟାକୁ କହ । ୫ ।
ମୃଦୁସୁଲ୍ଲ ପଠିଆଇ ମହାଦେବଙ୍କ କୁମାରୀକ ବେଗେ ଆଣି ।
ପିତାଙ୍କୁ ଦର୍ଶନ କରିଣ ଉଭା ବୋଲନ୍ତି ନୃପତିମଣି । ୬ ।
ଜଗତେ ସଂସାର ବୈଶ୍ୱର ଏ ଦୋହିତା ପ୍ରଦାନ କର ।
ଅବିଭାଇତ କନ୍ୟା ମୁଖ ନ ଶୃଙ୍ଖି ଅବଶ୍ୟ ବରେକ ବର । ୭ ।
ଗୈଡ଼ମଣ୍ଡଳ କଟକର ପୁରନ୍ଦର ବୋଲି ରାଜନ ।
ସକଳ ଗୁଣେ ରତ୍ନାକର ଇନ୍ଦ୍ରପଦକୁ ଭାଜନ । ୮ ।
ତାହାର ତନୟ ଗୁଣବନ୍ତ ଅବନୀ ତିଳେକ ନାମ ।
ମହୀପତିଙ୍କ ଶିରୋମଣି ରୂପେ ଅଭିନବ କାମ । ୯ ।

ନୃପତିର ସ୍ନେହ କୁମାର ସେ ଦୀକ୍ଷା ପାରଲେନ ସ୍ନେହାକୁ ।
ନିକଟେ ହୋଇବେ ସ୍ନେ ........................ । ୧୦ ।
ତୋର ରୂପ ଗୁଣ ଦେଖିଣ ପୋଡ଼ଇ ଆମ୍ଭର ହିଆ ।
ହେଅର ଜନନୀ ଆମ୍ଭେ ବୋଲୁଛୁ କାଳ ଟୋ ହୋଇବୁ ବନ୍ଧ୍ୟା ।୧୧।
ମୋହର କୁଳ ଉଧରିବୁ ମନ୍ତ୍ରିବୁ ଶ୍ରେଷ୍ଠ ମନ୍ତ୍ର ।
ଶଚୀକି ତୁମ୍ଭେ ପଟାନ୍ତର କୁମର ସ୍ନେ ଆଖଣ୍ଡଳ । ୧୨ ।
ଶୁଣିଣ ସୁମୁଖୀମନ୍ତ୍ରି ମଥା ପୋତିଣ ଦଣ୍ଡେକ ତୁନି ହୋଇଲା ।
ଚରଣେ ପଦ୍ମ ଗୋଟିସ୍ନେ ଲାଗିବ ଆପଣା ପୁରକୁ ଗଲା । ୧୩ ।
ଗୁପତେ ମୃଦୁସ୍ନୁଲା ରାଇଣ ସ୍ନେ ପେଷନ୍ତି କନ୍ୟାର ପାଶ ।
କସ ବସ୍ତ୍ରରଇ କୁମାରୀ ସ୍ନେହାକୁ ମଣିଣ ଆସ । ୧୪ ।
କଳ୍ପଲତା ସବୁସଖୀ ସଙ୍ଗେ ମଦନମଞ୍ଜରୀକୁ ଘେନି ।
ହସିଣ ନବାଲକ ଶୁଭ୍ରକେଶୀ ଯାମ୍ବା ବୋଇଲେ ଜନନୀ । ୧୫ ।
କୁଳେ କଳଙ୍କ ଲଗାଇଣ କେତେକାଳ ଜୀଇଥିବା ।
ପିତାର ଆଜ୍ଞାଂ ଅଲଙ୍ଘିତ କାଳି ସେ ବନ୍ଧ୍ୟା ହୋଇବା । ୧୬ ।
ଶୁଣିଣ ସାନନ୍ଦ ସବସଖୀ ମଙ୍ଗଳ ଗୀତ ଗାବନ୍ତି ।
ମହାଦେବଙ୍କ ଶ୍ରୀମୁଖରେ ଜଣାଇଣ ବଧାଇ ବହୁତ ପାନ୍ତିଂ । ୧୭ ।
ଶୁଭେଣ ଦିବସ ହୋସ୍ନେ ଶେଷ ପ୍ରବେଶ ହୋଇଲା ରଜନୀ ।
କୁମାରୀ କପଟ କଉଂତୁକେ ଖେଳଇ ସଖୀକି ଘେନି । ୧୮ ।
ରାଜ ଦେଉ ଦ୍ରହର ମାନେଣ ମାହାଦେଈଙ୍କ ବଜାସୁ କଲେ ।
କୁମାରୀଙ୍କ କୋଳ କରିଣ ମାସ୍ନେ ମୁଖେ ଚୁମ୍ବନ ଦେଲେ । ୧୯ ।
ମଦନମଞ୍ଜରୀ ହକାରି ରାଣୀ ବୋଲନ୍ତିଂ ଲୋକ କଢ଼ାଅ ।
ମୋଣୋହିଂ ଜଙ୍ଘରେ ନକର ଆଜି ଭୋଜନ ସମ୍ଭାର ଭିଆଅ ।୨୦।
ରାଜନ୍ତୁଂ ଉଜାଗର ହୋଇବ ଯେ ଆଜି ଅନିଦ୍ର ନୁହ ।
ମୋଣୋହିଂ ବଢ଼ାଇ ସୁପାତ୍ର ଘାତି ପଦ୍ମୁଂହିଣ ନିଦ ଯାଅ । ୨୧ ।

ଯେତେ ବୋଲଣ ଚାଟମଢ଼ାଦେଣ୍ଟ ବାହୁଡ଼ଂ ବଳଯ୍ୱେ ଭଣ ।
ଲୋକ କଡ଼ାଇ ଯେତକା ରହିଲ ମଦନମଞ୍ଜୁ କୁମାରୀ । ୧୨ ।
ମାଜଣା ସାରିଣ କଳ୍ପଲତା ବଢ଼ଧ ବେଶନ୍ତ ହୋଇ ।
ରତ୍ନ ଯୋଗାଡ଼ ବଟାଇଣ ଆଡ଼ଖୁରେମାନଙ୍କ' ଫେଇ । ୧୩ ।
ବାଟଳ ଭରଆ ଚଖ.ଳ ଦ୍ଧୃତ ସୁବର୍ଣ୍ଣ ଖୋରରେ ଲଇଂ ।
ପିଠାପଇଡ଼ ଶ୍ରୀକର୍ପୂର ଚୂର ଆମ୍ବ ଚଶୁଧ ଦେଇଂ । ୧୪ ।
ବୋଲଇ ଜଳପଲତା ଦେଣ୍ଟ ମଦନମଞ୍ଜୁକୁ ଗୃହିଂ ।
ଲେମ୍ବୁଜ ପୁଞ୍ଜିଏ ଆଣ ସଦ୍ଧ ଘୃତେ ଆମ୍ବିଳ ନାହିଂ । ୧୫ ।
ଯେସନ ବିଧାତାର ଲେଖନ କେତେବେହେ ନୋହଇ ଆନ ।
କୁମାରୀ କଣ୍ଠେ ମଣୋଚ୍ଛି କଲା ଦ୍ରବ୍ୟ ବେଞ୍ଜନ ମାନ । ୧୬ ।
ଲେମ୍ବୁଜ ଆଣି ମଦନମଞ୍ଜୁ କୁମରୀ କଣ୍ଠରେ ଦେଲା ।
ଦୁଇ ଦୁଇ ଫାଳ କରିଣ ମଞ୍ଜି କାଢ଼ି ଶ୍ରୀକରେ ଦେଲା । ୧୭ ।
ଦେଖ ସଖି ଚନ୍ଦ୍ର ମେଲ ଆନ ଖୋଡ଼ ରଙ୍ଗେ ବଡ଼ ଶୋଷ ।
ପଖାଳ ଘୃତେ ଶୋଷ ନ ହୁଗଇ ଅଜ ବଡ଼ ଟିବାସ' । ୧୮ ।
ହସିଣ ବୋଲନ୍ତି ମଦନମଞ୍ଜୁ ଆଜ ଜାଣିଲି ମୁହିଂ ।
ତୋହୋର କ୍ଷୁଧା ପିପାସା ବୋଲ କଣ୍ଠେ ଶୁଝିଲା ନାହିଂ । ୧୯ ।
ବୋଲନ୍ତି ଶୁଣ ଗୋ ସଖି ତୁମ୍ଭେ ତୋ ଯାଅ ଆପଣ ।
ମାଆଙ୍କ ସ୍ଥମୁରେ ଜଣାଇଣ ମଧୁର ଖଣ୍ଡି ଯେ ଆଣ । ୨୦ ।
ଧାଇଁକାରେ ମଦନମଞ୍ଜୁ ସଖୀ ପୁଚ୍ଛ ବାହାର ହୋଇଲା ।
କର୍ପୂର ଲେମ୍ବୁଜ ମିଶାଇଣ କୁମାରୀ ପଣ୍ଡଡ଼ ପିଇଲା । ୨୧ ।

---

୧ । ଆଡ଼ଖୁର-ହିଂଟକୁ ଶାଶୁ ଘରକୁ ପଠାଇବା ସମୟରେ ଦେବା ଉପକରଣ ।

୨ । ପିପାସା ବା ଶୋଷ ।

ମାହାଦେଈଙ୍କ ଜଣାଇଲା ମଦନମଞ୍ଜୁ ନବୀନ ଯୌବନା ଆସିଲା ।
ପିଠା କଣ୍ଟରେ ଆଣିଣ ଥୋଇଲା ଦେଖିଣ କୁମାରୀ ହସିଲା । ୩୨ ।
ବୋଲନ୍ତି କଳପଲତା ସଖି ଜଙ୍ଗମ ପଠ ଯେ ନେଇ ।
ଏତେ ଦିନ ନଈଲ ମୋହ ବିଧାତା ପ୍ରେମନ୍ତ କଲା । ୩୩ ।
ମୀନ ପୂର୍ଣ୍ଣମୀ କଣ୍ଠେ କଲା ଅଚ୍ଛୁ ବୋଲନ୍ତି ମଦନମଞ୍ଜୀ ।
କାଲି ସେ ଜଙ୍ଗମ ଆସିବ ଗୋ କହିବ ଶୁଭବାରତା । ୩୪ ।

ଅବଶ୍ୟ କି କୁମର ନ ଆସିବ ସରୂପ ଶୁଣ ଗୋ ସଖି ।
ମୋହର ମୁଖ ନ ଦେଖିଣ ଏମନ୍ତ ହୋଇବ ଦୁଖୀ । ୩୫ ।
ଶିଶିର ଋତୁ ମଧୁକର ତା ହୋଇବ କୁମର ।
କମଳ ବନ ବିଯୋଗେଣ ଯେସନେ ଖେଦନ୍ତି ଭ୍ରମର । ୩୬ ।

ଶିମୁଳୀ ଲୁବୁଧନ୍ତେ ମଧୁକର ଜାଣି ହୋଇବ କୁମର ।
ନଳିଣୀ ବିହୁନେଣ କୁମର ସଖି ଗୋ କାହା ସାଙ୍ଗର । ୩୭ ।

ଶୁଣ ସଖି ସର୍ଗର ସେବକ କାମେମା ସେବକ ଗନ୍ଧର୍ବ କୁଳେ ।
ନନ୍ଦନବନେ ଫୁଲ ତୋଳିବାକୁ ବସନ୍ତ ଋତୁରେ ଗଲେ । ୩୮ ।
ଦୁହେ ଦୁହିଂକର ଜୀବନ କ୍ଷଣେ ବିଚ୍ଛେଦ ନାହିଂ ।
ଦୁହେଂ ଦୁହିଂକିଂ ସତ୍ୟ କରିଥିଲେ କଳପତରୁକୁ ଛୁଇଂ । ୩୯ ।
ଏସନେ କେତେହେଂ ଦିନାନ୍ତରେ ଇନ୍ଦ୍ରଗୋବିନ୍ଦ ଆସି ।
ସକଳ ସୁରଗଣ ଯୌବନ ନୃତ୍ୟ କରନ୍ତି ବସି । ୪୦ ।

ନୃତ୍ୟ କରନ୍ତି ସେ ସୁନ୍ଦରୀ ଅପସରାଙ୍କ ସଙ୍ଗେ ।
ଅନୁରାଗ ବିଚ୍ଛେଦ ସହି ନ ପାରି ଗନ୍ଧର୍ବ ଦେଖନ୍ତି ରଙ୍ଗେ । ୪୧ ।
ବଳିହି ବଦନ ଦରଶନ ଯୋଗେ ପାଇଲା ବାଳୀ ।
ସକଳ ନୃତ୍ୟ ପାଶୋରିଲା ଚରଣେ ନ ପାରେ ଚାଲି । ୪୨ ।
ଜାଣିଣ କୋପକଲା ସୁରେଶ ଶାପ ବିହିଲେ ବେନି ।
ବିଚ୍ଛେଦ ଦଣ୍ଡେ ନ ସହିଲେ ମଦନ ଉକ୍ଷକ ଯୌବନ । ୪୩ ।

ଜମ୍ବୁଦ୍ୱୀପେ ଜାତ ହୋଇବ ଦେହ ବନ୍ଧ ।
ବହୁତ ଦୁର ବିଚ୍ଛେଦ ସେ ଥିବ ତୁମ୍ଭ ଦୁଃଖ ସନ୍ଧ । ୪୪ ।
ଏସନ ବୋଲିଣ ସୁନାସୀର ଦୁହିଁଙ୍କି ଶାପ ଦେଲା
କାନ୍ତ ନ ଦେଖି କାମେଣୀ ମନ ଗୋ ତେସନ ହୋଇଲା । ୪୫ ।
ମଣୋହିଂ ସାରି ଆଲିଙ୍ଗବନ କରିଣ କର୍ପୂର ଗୁଆ ଖାଇ ।
ଦିବ୍ୟ ପଲଙ୍କରେ ଭୁରିତେ ବିଜୟେ ଯାଇ । ୪୬ ।
ମଦନମଞ୍ଚ ତଳେ ବସିଣ ଖଣ୍ଡୁଆ ଲଗି କରାଇ ।
ଘନ ଘନ ସୁନ୍ଦେଶ୍ୱ ଶ୍ରୀ ଅଙ୍ଗେଣ ଗରଳ ବସ ଘାରଇ । ୪୭ ।
ବୋଲଇ କୁମାରୀ ଶୁଣ ଗୋ ସଖୀ ମୋର ହୃଦର କଥା ।
ତୋର ମୋର ସ୍ନେହ ଜୀବନ କେବେହେ ନ କରିବୁ ଅନ୍ୟ । ୪୮ ।
ସ୍ନେହେ ଯାଳ ମୁହିଂ ଥିଲଇଁ ତୁମ୍ଭ ମନ ହରି ।
କାଳି ସେ ପରଲୋକ ହୋଇବ ଅବନୀ ତଳେ ବଳି । ୪୯ ।
ହେ ସଖୀ ମୋର ଜନନୀ ମନେ ଯେମନ୍ତେ ନ ଧରିବେ ମୋତେ ।
ଚରଣ ଧରି ମୁଁ ମାଗଇ ସ୍ନେହେ ଦେଲୁସି ମୋତେ । ୫୦ ।
ସ୍ନେହେ କହିଣ କନକଲତା ଦୋପଟୀ ସଜ ହୋଇଲା ।
ଅଟୀସ୍ନେ ଚାଣ୍ଡ ମଦନମଞ୍ଚ ପଲଙ୍କ ତଳେ ଶୋଇଲା । ୫୧ ।
ଜଗନ୍ନାଥ ଜଗତଜୀବନପତି ନିଜେ ଲୋଚନ ବେନି ।
ଜଳଧର ଶ୍ୟାମ ସୁନ୍ଦର ମୁଖ ଉଦେ କରୁଣା ହେନ । ୫୨ ।
ସୁରଙ୍ଗ ଅଧର ଦିବ୍ୟ ବନ୍ଧୁଳି ବକ୍ର ରହ୍ମ ରେଖା ।
ମହାନ୍ତ ଦିନକର କିରଣ କପୋଲେ ତିଳକ ଶାଖା । ୫୩ ।
ଶ୍ରୀଖଣ୍ଡି ମଣ୍ଡିତ ଶ୍ରୀଅଙ୍ଗ ଗୋଟି ବାମେ କ୍ଷୁର ଶାରନେତ ।
ସକଳ ସସାରେ ସ୍ପର୍ଶିତ ଶଙ୍ଖଚକ୍ର ହାଥ । ୫୪ ।
ଅଭୟ ଦାପ୍ୟିମା ଭୁଜ ବେନି ସୁରଗଣ କଳ୍ପତରୁ ।
ବୋଲଇ ଶିଶୁ ଅର୍ଜୁନ ଅଶ୍ରା ବିଶ୍ରାମ ମେରୁ । ୫୫ ।



# ଷଷ୍ଠ ଅଧ୍ୟାୟ

ରାଗ କେଦାରଚକ୍ରକେଳୀ ବାଣୀରେ ଗାଇବ ।

ଶୁଣ ପଦ୍ମରେକ ଥାଉ ରଜନୀ

ରଙ୍ଗେ ହୁଳହୁଳି ହନ୍ତି କାମେନୀ । ୧ ।

ରଙ୍ଗେ ମଙ୍ଗଳ ଗୀତ ସେ ଗାବନ୍ତି,

ହସି ଏକକୁ ଆରେକ ରାବନ୍ତି । ୨ ।

ରାତ୍ରେ ବଡ ଅବକାଶ ହୋଇଲେ,

ପାନ୍ତ ଅମନାତ୍ୟ ରାଇ ବୋଇଲେ । ୩ ।

ତୁମ୍ଭେ ଘୁମୁଣ୍ଡିଆ ପୁର ମଣ୍ଡାଅ,

ଠାବେ ଠାବେ ଶୀତଳ ଦ୍ରବ୍ୟ ଥାଅ । ୪ ।

ଘୁମୁଣ୍ଡିଆ ସୁବର୍ଣ୍ଣ ଖମ୍ବମାନ

ସବୁଠାବେଣ ରତ୍ନ ସିଂହାସନ । ୫ ।

ତହିଁ ଉପରେ ଚନ୍ଦ୍ରାତପ ଟାଣି,

ଯେସନ୍ତେ ସୁଧର୍ମାଂ ସଭା ନବବାଣି । ୬ ।

ସିଂହଦ୍ୱାରେଣ ଟମକଂ ଦଆଅ,

ଦେବା ଜଳଂଭୁକ ସଂଗୃ ଭ ଯ୍ୟାଅ । ୭ ।

ଅଶ୍ୱ ଗଜ ପାଦାତି ସଜ ହୋଇ

ସବୁ ସମ୍ଭାର ହୋଇଥାନ୍ତୁ ରହି । ୮ ।

ରାତ୍ରେ ଭିତରେ ବଜସ୍ତୁ କରନ୍ତିଂ

ତାଙ୍କ ନିତ୍ୟକର୍ମମାନ ସାରନ୍ତିଂ । ୯ ।

ମହାଦେବଙ୍କ ଅପହୃତ ହୋଇଲେ

ଝିଡ଼ା ମୃଦୁସୁଲ୍ଲୀ ବଇ ବୋଇଲେ । ୧୦ ।

ତୁମ୍ଭେ କଳପଲଚା ପୁରେ ଯାଅ,
ତାଙ୍କୁ କୋଇଲ୍ ମାଜଣା କରାଅ ।
ଶୁଣି ଧାମନ୍ତି ସକଳ ଯୁବତୀ,
ଯାଇ କନ୍ୟାର କତରେ ମିଳନ୍ତି । ୧୨ ।
ଗୀତ ଗାଇ ହୁଳହୁଳି ଦଅନ୍ତି,
କେହୁ ଶ୍ରୀପପୁର ଧର ମାଡ଼ନ୍ତି । ୧୩ ।
ଶୁଣି ମଦନମଞ୍ଜୀ ଉଠିବସି,
ସବୁ ପରିବାରଙ୍କି ଗୃହ୍ବାଂ ହସିଂ । ୧୪ ।
ସେ ଯେ କୁମାରୀକ ଗୃହ୍ବାଂ ବୋଇଲ୍,
ଆସି ମାଜଣା ବେଳହ୍ବାଂ ହୋଇଲ୍ । ୧୫ ।
ଆଖି ଫେଡ଼ଣ ଦର୍ପଣକୁ ଗୃହ୍ବାଂ
ଅ.ଜ କପଟେ କେତେ ନଦ ଯାଅ । ୧୬ ।
ଜୁଠି ଆପଣେ ଶ୍ରୀଅଙ୍ଗ ମାଡ଼ମାଂ
ମୁଖୁଂ ସିନ୍ଦୁଂଆ ଦୋପଟୀ କାଢ଼ମା । ୧୭ ।
ପାଶେ ପଲଙ୍କ ବେଢ଼ିଣ ଯୁବତୀ,
ଉଠେ ମଣିମା ମଣିମା ବୋଲନ୍ତି । ୧୮ ।
ମାଏ ଢ଼ାଳେ ଯେ ରଜନୀ ପାହ୍ବାଂମା,
ଶୁଭଲଗ୍ନଂ ଉଛରହ୍ବାଂ ହୋଇ ମା । ୧୯ ।
ମାଏ ସକଳ ଉତ୍ସୁକ ମନେଣ,
ତୁମ୍ଭ ବଢ ମଙ୍ଗଳ ନମନ୍ତେଂଣ । ୨୦ ।
ଉଠ ନିତ୍ୟକର୍ମନ୍ତ୍ରଂ ବେଗ ସାର,
ବର ବରଣ ଆଣିମା ତୁମର । ୨୧ ।
ସେ ଗୋ ଯେ ଯାହା ସେବାରେ ଆବୋର,
ପରିବାରୀ ସ୍ତେ ଅଛନ୍ତି ଆବୋର । ୨୨ ।

ବାମା ଗଳାରେ ହାଥ ପକାଇଲେ,
ଧରି କୁମାରୀ କୋଳ ବସାଇଲେ । ୨୩ ।
ଜନ୍ମଂ କୁମାରୀ ପଡ଼ିଲାକ ତଳ,
ତନ୍ମଂ କାମେଶ୍ୱରୀ କରନ୍ତି ତମାଳି । ୨୪ ।
ଚାଲ ଠାକୁରଙ୍କୁ ବେଗେ ଜଣାଅ,
ବରି କୁମାରୀ ପୁରକୁ ଅଣାଅ । ୨୫ ।
ଅବା କେବେ ଅପହୃତ ହୋଇବେ,
ମୁଖ ଟେକ ହସିଂ କଥା କହିବେ । ୨୬ ।
ଉଠ ଶ୍ରେଷ୍ଠ ମଣ୍ଡଳ ଠାକୁରାଣୀ,
ଦୁଃଖ ନାଶନ କଟକ ମଣ୍ଡଣି । ୨୭ ।
ବୋଲି କୋଳ ବସାଇଲେ କୁମାରୀ,
ଦୃଢ଼ କରି ବାନ୍ଧିଲେ ତା କବେଶୀ । ୨୮ ।
ଦେଖି ବଦନ ପଙ୍କଜ ନୀରସ,
କେଆଳିବଇ ? କୃତ୍ତି ଦରହାସ । ୨୯ ।
ସ୍ୱିନ୍ଧଂ ସମସ୍ତ ଲୋକ ପରିବାରୀ,
ସବୁ ପରିବାରୀ ହନ୍ତିଂ ବୋବାଳି । ୩୦ ।
ବାବୁ ବଦନଇନ୍ଦୁଂ ଯେ ମଳିଣ,
ଊର୍ଦ୍ଧ୍ୱ ଉଦୟେ ନୟନ ଗଳିଣ । ୩୧ ।
ବାଳୀ ଭୁଶୟୁ ଅବସ୍ଥା ମଣିଲେ,
ପୁଣି ପୁଣି ନରେଶପିଣ ଜାଣିଲେ । ୩୨ ।
ତାର ବଦନ ଚନ୍ଦ୍ରମା ଉଜଳ,
ଗ୍ରହପାଖେ ଲଗିଲାକ କଜଳ । ୩୩ ।
ମୀର ନଳମାନ୍ତିଂ ଅତି ନୀରସ,
ବାମା ଜାଣିଲେ ମୁଖର ବିରସ । ୩୪ ।

ତାର ସୁନ୍ଦର ସ୍ୱର୍ଣ୍ଣରେଖା ରେଖିଲ,
ଅତ ଅମୀୟ ଅଧର ଶୁଖିଲ । ୩୫ ।

କର ଚରଣୁ ରକତ ଝାଡ଼ିଲ,
ଦେଖି ସଖୀ ଶୋକ ନଦୀ ବୁଡ଼ିଲ । ୩୬ ।

ତାର କାକର ଲଗିଲ ଶ୍ରୀଅଙ୍ଗ,
ଶ୍ୱାସ କେବେହେ ନାହିଁ ନାସ ଅଙ୍ଗ । ୩୭ ।

ତାର ଗୁଣ କେ କହିବ ବଣେଷି,
ମହୀ ଖସିଛ ପଡ଼ୁଅଛୁ ଶଶୀ । ୩୮ ।

ଯହୁଁ ଜାଣିଲେ କୁମାରୀ ନଧନ,
ନହୁଁ ଶୁଭିଲାକ ଗୋଳ ରୋଦନ । ୩୯ ।

ପ୍ରାଣ ମଦନ ମଞ୍ଜରୀ ଗୁଞ୍ଜିଲ,
ଭୂମି ମୃଷାଗତ ଯାଇ ପଡ଼ିଲ । ୪୦ ।

ତହୁଁ ଜଣ ଗୃହ ଦୁଇ ଧାଇଁଲେ,
ଯାଇ ମହାଦେଙ୍କ ଆଗେ କହିଲେ । ୪୧ ।

ଯୁବତୀ ରତ୍ନ ଶିରୋମଣି,
ଅଣ ଓଳଗ ତୁମ୍ଭର ଦୁଲଣୀ । ୪୨ ।

ଶୁଣି ଚାଟକା ହୋଇ ମାହାଦେଙ୍କ,
ଜଳ ଜଳ ସବୁ କୁହିଁ ଅନାଇଁ । ୪୩ ।

ସେ ଯେ ପରବାସ ଗୃହୁଁ ପଶୃତ,
ମୋର ମାର୍ଜଣା କନ୍ଦକ କୁମାରୀ । ୪୪ ।

ତହୁଁ ଅନ୍ତଂପୁର ନାରୀ ଜାଣିଲେ,
କଥା ନଶ୍ଚୟ କରଣ ମଣିଲେ । ୪୫

କଳ୍ପଲତା ବୋଲି ବୋବ ପାଡ଼ନ୍ତି
କେହୁଁ ଉଚସ୍ୱରେ କର ଚାଡ଼ନ୍ତ । ୪୬ ।

ରାଣୀ ମୃତ୍ୟୁ'ଗତ ପ୍ରାଇ ପଡ଼ିଲା,
ବେଲ ଉଦସ୍ତୁ ହୋଇ କ ବୁଡ଼ିଲା । ୪୭ ।

ପୁଣି ଦଣ୍ଡକେ ଉଠିଣ ବସିଲା,
ସ୍ତନ୍ଧାଂ ଚାହିଁ ଚାହିଁ ହୋଇ ହସିଲା । ୪୮ ।

ପୁଣି ଉଚ୍ଚସ୍ୱରେ କାନ୍ଦ ଉଠାଇ,
ପଡ଼ ଆକୁଳେ ଭୂମି ସ'ଉଂଟାଇଂ । ୪୯ ।

ଯେହ୍ନେ ବାତୁଳ ଲୋକର ବଚନ,
କହେ କ୍ଷଣ କ୍ଷଣକେ ଆନୁଆନ । ୫୦ ।

ଧରି ତୋଳି ବସାଇଣ ସଖୀନ୍ତିଂ,
ବାସ ପାଣି ଦେନ ମୁଖେ ସିଞ୍ଚନ୍ତିଂ । ୫୧ ।

ଯନ୍ତୁଂ ବସିଲା ଦେହେ ଚଇତନ,
ଗୁଣ ସୁମରି କରଇ ରୋଦନ । ୫୨ ।

ତୁ ମୋ ଜୀବର ଜୀବନ କୁମାରୀ,
କେତେ ସୁମରିବି ଗୁଣ ତୁମ୍ଭର । ୫୩ ।

ମୋତେ ଦଣ୍ଡେ ଯେ ମୁରୁଛି ନ ପାରୁ,
ଦେଖି ଉପତ ହୋଇଥାଉ ଧୂରୁ । ୫୪ ।

ତୋର ସଂପୂର୍ଣ୍ଣ ଚନ୍ଦ୍ରମା ବଦନ,
ଯାହା ମୁକୁର କରଇ ମଦନ । ୫୫ ।

ତୋର ଅତି ସୁକୁମାର ଶ୍ରୀଅଙ୍ଗ,
ଯହିଁଂ ଘର କରି ରହେ ଅନଙ୍ଗ । ୫୬ ।

ତୋର ଦଶନ ଗଜମୋତି ମଣି,
ଲୁଚିଯିବ ତୋ ଖୁଲିବାର ଦେଖି । ୫୭

ମୋର ଗୁହରେ କା ଆଗେ କହିବ,
ପୋଡ଼ ଜୀବନ ଗରଳ ଖାଇବ । ୫୮ ।

ତୁ ମୋ ସକଳ ଗୁଣେ ଗୁଣନିଧି,

ତେବେ ହରିଲା ବିହି ଗୁଣନିଧି ।୫୯ ।

ମୁଁ ଯେ କଳପଲତାର ଜନମି,

ଯେହ୍ନା କଲୁରେ ହରିଣ ନୟନି ।୬୦ ।

ତୋର କହିବା ଗୁହ୍ନିବା ହସିବା,

ଫୁଲ ନାସିକା ପୁଡ଼ା ଉଲୁସିବା ।୬୧ ।

ତୋର କଟେକ-କଶ୍ୱବର ଜାନୁ;

ଅତି କୋମଳ ସୁକୁମାର ତନୁ ।୬୨ ।

ରାଣୀ ଆକୁଳ ଦେଖିଣ ଯୁବତୀ,

ବେଢ଼ି ଉଚ୍ଚସ୍ୱରେ ଶୋକ କରନ୍ତି ।୬୩ ।

ଜାଣି ନୃପତି ଧଜପେ କରନ୍ତି,

ମାହାଦେଈଙ୍କ କତରେ ମିଳନ୍ତି ।୬୪ ।

ଯହୁଁ ଜାଣିଲେ କୁମାରୀ ନିଧନ,

ରାଏ ଆପଣେ କରନ୍ତି ରୋଦନ ।୬୫ ।

ମାହାଦେଈ କୋଳ କରି ଭୂପାଳ,

ଶ୍ରୀକରରେ ମାରେ ନିଜ କପୋଳ ।୬୬ ।

ବିହି ଯାହା କରିଅଛି ଲିଖନ,

ତାହା କାହାରେ କରି ହୋଏ ଆନ ।୬୭ ।

ପାତ୍ରମନ୍ତ୍ରୀ ଅଧିକାରୀ ସକଳ,

କାନ୍ଦି କଣ୍ଠକପାଟ କଲବଲ ।୬୮ ।

ରାଏ ମଦନମନ୍ତ୍ରୀ ହକାରନ୍ତି,

ତାଙ୍କୁ କୁମାରୀ କଥା ପଚାରନ୍ତି ।୬୯ ।

ସେ ଯେ ସକଳ କଥାନ୍ତ କହିଲା,

ଜେମା ଝିଅର ପଇଡ଼ ଖାଇଲା ।୭୦ ।

ଶୁଣି ମଦନମଞ୍ଜରୀ ବଚନ,
ଲୁହ ଝର ଝର ବହେ ଲୋଚନ । ୭୧ ।
ତହୁଁ ଜାତ ଯୁବତୀମାନେ ବୋଇଲେ,
ଗଦ ଗଦ ହୋଇ ସମ୍ଭେ ବୋଇଲେ । ୭୨ ।
ମୋର କୁମାରୀଙ୍କ କର ମାର୍ଜଣା,
ବାଜ ଶମଶାନ ଭୂମି ବାଜଣା । ୭୩ ।
ଯେତେ ବୋଲ ଚଇତନ ବୁଡ଼ିଲା,
ମୂର୍ଚ୍ଛାଗତ ହୋଇ ରାଜା ପଡ଼ିଲା । ୭୪ ।
ପାତ୍ରମନ୍ତ୍ରୀ ଧ୍ୟେଶ୍ୱରେ ମିଳନ୍ତି,
ମୃଦୁସ୍ୱରେ ଶାଇ କର ବୋଲନ୍ତି । ୭୫ ।
ଆମ୍ଭେ ବୋଇଲୁ ଷାମୁରେ ଜଣାଅ,
ଜେମା ବାହାର ପୁରକୁ ଅଣାଅ । ୭୬ ।
ଯାହା ହୋଇଲା କେବେ ନୋହେ ଆନ,
ଯେବେ କର ସତ୍କାର ବିଧାନ । ୭୭ ।
ପାତ୍ର ପୁରୋହିତ ଆସି ମଣାନ୍ତି,
ରାଜା ସଚେତ ଦେଖିଣ ମଣାନ୍ତି । ୭୮ ।
ତହୁଁ ପାଞ୍ଚ ସାତ ମିଳି ଯୁବତୀ,
ଜେମାଦେଈଙ୍କ ମାର୍ଜଣା କରନ୍ତି । ୭୯ ।
ନୂଆ ନେତେକ ନାଗି କରାଇଲେ,
ରତ୍ନ ଅଳଙ୍କାରମାନ ଲାଇଲେ । ୮୦ ।
ଗନ୍ଧ କର୍ପୂର କସ୍ତୁରୀ ଘଷନ୍ତି,
ନାନା କୁସୁମେ କବରୀ ଶୋଭନ୍ତି । ୮୧ ।
ଦିବ୍ୟ ପଲଙ୍କ ଉପରେ ସୁପାତି,
ତହିଁ ପହୁଡ଼ାଇଲେକ ଯୁବତୀ । ୮୨ ।

ଇନ୍ଦ୍ର ଗୋବନ୍ଦ ପାଟ୍ଟୋଡ଼ ଓଢ଼ାଇଂ,
ସବୁ ସଖୀମାନେ କାନ୍ଦ ଗୋଡ଼ାଇଂ । ୮୩ ।
ଆଣି ପଶ୍ଚିମ ଦୁଆରେ ଥୋଇଲେ,
ଗୃହାଶ୍ରମାନଙ୍କୁ ଚୁହାଇଲେ । ୮୪ ।
ଛନ୍ଦେଂ ବାଜିଲା ଝମକ ନିଶାଣ,
ପୁର ନାରୀମାନେ ବୋଲନ୍ତି ଶୁଣ । ୮୫ ।
ବାବୁ ବିଧାତା ତୋହର କଷଣ,
ତୋର ହୃଦୟ ଘଟଣ ପାଷାଣ । ୮୬ ।
ବର ବରଣ ହୋଇଅଛି ବସି,
କନ୍ୟା ଅନଳେ ଯାଉଅଛି ପଶି । ୮୭ ।
ପୋଡ଼ୁ ପୋଡ଼ୁ ସେ ଅମାନ୍ତ ସଂସାର,
ସ୍ନେହ ଦେଖୁ ଦେଖୁ ଅତ ଅସାର । ୮୮ ।
ଜହ୍ନେଂ ଶୁଭିଲା ରୋଦନ ଶବଦ,
ବର ବରଜାନ୍ତ ଶୁଣି ଚବଦ । ୮୯ ।
ଝନକର ଇ କୁମୁଦ ବଦନେଣ,
ଚନ୍ଦ୍ରେଂ ବନେ ଯେସନେକ ଚନ୍ଦ୍ରେଣ । ୯୦ ।
ବର ସିଂହାସନୁ ତଳ ପଡ଼ିଲା,
ମହୀ ମେଦମା ତଳେକ ପଡ଼ିଲା । ୯୧ ।
ଧୂଳି ସାଉଁଟି ମୁଣ୍ଡରେ ଭରଇ,
କାନ୍ଦ କାନ୍ଦ ଲୋକଙ୍କୁ ନ ଚାହୁଁଇଂ । ୯୨ ।
ନଧି ପ୍ରାପତ ପାପୀର ହାଥର,
ମୋରଂ ଅଭାଗ୍ୟେ ହୋଇଲା ପଥର । ୯୩ ।
ବାମାକୁ ବ୍ରହ୍ମ ବେଳେ ନ ଲଖିଲା,
ମୋର ସାହସ ଭରସା ଛୁଟିଲା । ୯୪ ।

କୃଷ୍ଣ'କୁନ୍ତଳା ନଦୀରେ ଝାସିବ,
କୁମାଶ୍ୱ ସଙ୍ଗେ ଅଗ୍ନିରେ ପଶିବ । ୯୪ ।
ଯାଇ କାହାର ମୁଖକୁ ଗୃହିଂବ,
ପୋଡ଼ୁ ଜୀବନ ଗରଳ ଖାଇବ । ୯୬ ।
ପିତା ଗୃହେମଣ୍ଡଳରେ ସ୍ୱଜନ,
ମୁଁ ତ ସେବକ ପଣକୁ ଭାଜନ । ୯୭ ।
ଯେବେ ସମାନ୍ୟ ନୋହିବ କୁମାଶ୍ୱ,
ମୋତେ ମ ବଳ ଆପଣେ ନ ମର । ୯୮ ।
କନ୍ୟା ଭାଇ ଯେ ଶୋକେଣ ଅଚେତ,
ପ ନ ମନ୍ତ୍ରୀଂ କରାଅନ୍ତିଂ ସଚେତ । ୯୯ ।
ସେ ଯେ ଦୁସହ କାରୁଣ୍ୟ କରଇ,
କ୍ଷଣକ୍ଷଣକେ ଭୂମିରେ ପଡ଼ଇ । ୧୦୦ ।
ଶୋକ ଆରତେ ଉଠେ ରାବ ଦେଇ,
କେଣେ ଗଲୁ ମୋ କଳ୍ପଲତା ଦେଇ । ୧୦୧ ।
ମୋତେ ତୋହର ସଙ୍ଗେ ଘେନ ଯାସି,
ମୁଂତ କେବେ ନୋହଇ ତୋତେ ଦୋଷୀ । ୧୦୨ ।
ତହୁଁ ପଶ୍ଚିମ ଦୁଆରେ ଚହଳ,
ସିଦ୍ଧମନ୍ତ୍ରନେ ଯେସନେ ଗହଳ । ୧୦୩ ।
କେମା ଚଉଦୋଳରେ ବସାଇଲେ,
ତହୁଁ ବିବଧ ବାଦ୍ୟ ବଜାଇଲେ । ୧୦୪ ।
ଦିବ୍ୟବେଶ ଦେଖି ପୁର ସୁନ୍ଦରୀ,
ଲୁହ ପୋଛୁ ବୋଲନ୍ତି ହରି ହରି । ୧୦୫ ।
ତହୁଂ ଗୁହାଶ୍ରାମାନେ ଅଇଲେ,
ଚଉଦୋଳ କୁମ୍ଭମାନ ଧଇଲେ । ୧୦୬ ।

କାହେଂ ବନ୍ଧୁଂଣ ଅଛନ୍ତି କେମାନ୍କୁ,
ଧରଅଛନ୍ତିଂ ମଦନମତ୍ତକୁ । ୧୦୭ ।
ଚଢ଼ିଁ ଗଉଡ଼ ମାହୁଂତ ପାଦାନ୍ତି,
ଚଚ୍ଚମଚଟେ ଆଡ଼ ହୋଇ ଯାଉନ୍ତି । ୧୦୮ ।
ପାଟଷଣ୍ଢ ନିରନ୍ତରେ ଉଡ଼ନ୍ତି,
ଦୁଇ ଚାରୁଣେ ଗୃମର ପାଡ଼ନ୍ତିଂ । ୧୦୯ ।
ତାକୁ କାଞ୍ଚନ କୁସୁମ ବଞ୍ଚନ୍ତିଂ,
ବାରବଳାସୁଣି ଆଗେ ନାଚନ୍ତିଂ । ୧୧୦ ।
ଧାଟ ଗହଳେ ବାଟ ନ ପାବନ୍ତିଂ,
ଯାଉ ଯାଉ ବୋଲି ଡାକ ପାଡ଼ନ୍ତିଂ । ୧୧୧ ।
ତହୁଂ କଟକୁ ବାହାର ହୋଇଲେ,
ଯାଇ ଚନ୍ଦନ ବନରେ ହୋଇଲେ । ୧୧୨ ।
ଯହୁଂ ଚଉଦୋଳ ଚଳି ଆସଇ,
ହେ ଯେ ବୃକ୍ଷକ ପତ୍ରପ୍ରେ ଦିଶଇ । ୧୧୩ ।
ଦେଖି ବୋଲନ୍ତିଂ କଟକ କାମେମା,
କେଉଂ ଯୋଗେ ପାହୁଲ୍ୟୁ ରଜନୀ । ୧୧୪
ସେ ଯେ ହସ୍ତିକ ମଣ୍ଡୋପ କଡରେ,
କୃଷ୍ଣଂକୁନ୍ତଳା ନଦୀ ନିକଟରେ । ୧୧୫ ।
ତହୁଂ କନ୍ୟା ଗୁହାଇ ସଜାଡ଼ିଲେ,
ପଣ୍ଡୁସ କାଠେ ମେଢ଼ ତୋଳାଇଲେ । ୧୧୬ ।
ଘୃତ ଚନ୍ଦନ କାଠରେ ଢାଳନ୍ତିଂ
ନେଇ କର୍ପୁର ଶେଯେ ସେ ପାଡ଼ନ୍ତିଂ । ୧୧୭ ।
ଦିବ୍ୟ ଆକାଶ ମଣ୍ଡଣି କରନ୍ତି,
ନେତ ପତନୀ ଚବଳ ଉଡ଼ାନ୍ତିଂ । ୧୧୮ ।

ତନ୍ତ୍ରେ ଫୁଲମାଳମାନ ଲମ୍ବାନ୍ତି
ଯେତେକ ଆକୁଳେ ଆରେକ ଖଟନ୍ତି ।୧୧୯।
ଗନ୍ଧ ଚନ୍ଦନ ଛଡ଼ାନ୍ତି ଛିଣ୍ଟନ୍ତି,
ତନ୍ତ୍ରେ ସୁଗନ୍ଧ କୁସୁମ ବଞ୍ଚନ୍ତି । ୧୨୦ ।
ସବୁ ଲୋକ ଶିବ ଶିବ ସୁମର,
ଜନ୍ତୁଂ ବନ୍ଦନ କରବେ କୁମାଗ୍ର । ୧୨୧ ।
ନଗନ ଜଙ୍ଗମ ଦୂତଙ୍କ ସାଙ୍ଗର,
ମନ୍ତ୍ରୀ ସୁତ ମାନନ୍ତି ମଧୁକର । ୧୨୨ ।
ଦୁଃଖ ଦୁଃଖେଣ ରଜନୀ ବଞ୍ଚିଲେ,
ତନ୍ତ୍ରେ ଜଙ୍ଗମ ରୂପନ୍ତି ଧଇଲେ । ୧୨୩।
ବେଗି ବିଭୂତି ଶିରେ ଲଗାଇଲେ,
ତନ୍ତ୍ରେ କୁସ୍ତୁଂକୁନ୍ତଳା ନଦୀ ଗୀରେ । ୧୨୪ ।
ଯନ୍ତୁଂ ଶ୍ୱେ ବେଶ ଚନ୍ଦନ ବନେଣ,
ଅତି ଆନନ୍ଦ ଉତ୍ସୁକ ମନେଣ, । ୧୨୫ ।
କର୍ମେ ଯାହା ଜଗନ୍ନାଥ ଲିଖିଲା,
ତାହା କେହେ କାହାର ଆନକଲା ।   ୨୬ ।
ପୁରୁଷୋତ୍ତମ କ୍ଷେତ୍ର ସିନ୍ଧୁଂ କୂଳେ,
ନୀଳଗିରି ଶିଖର ବଟ ମୂଳେ । ୧୨୭ ।
ଦିବ୍ୟ ରତ୍ନ ଚନ୍ଦ୍ରେଣ ସିଂହାସନ,
ବଜେ ଚତୁର୍ଦ୍ଧିଂ ପଦ୍ମଂ ଆସନ । ୧୨୮ ।
କ୍ଷଣ କ୍ଷଣକେ ଆନ ଆନ ରୂପ,
ସବେ ବ୍ରହ୍ମଂ ହୋଇଥୁ ଦାରୁ ସ୍ୱରୂପ । ୧୨୯ ।
ସ୍ଥିରୁ ନୀଳଜଳଧର ବଦନ,
ଯାର କଳଙ୍କୁ ଉଦୟୁ ମଦନ । ୧୩୦ ।

ତାଙ୍କ ସମ୍ଭ୍ରନ୍ତଂ ଚନ୍ଦ୍ର ଦୁଇ ଡୋଳା,

ସନ୍ଥଂ ରେଖା ବସଜେ ବଜ୍ରମାଳା । ୧୩୧ ।

ତାର ଅଧର ସୁନ୍ଦର ଶ୍ରୀମୁଖ,

ଘନ ପଟରେ କନକ ତିଳେକ । ୧୩୨ ।

ଚତ୍ତୃସମ ଶ୍ରୀଅଙ୍ଗେଣ ସାମଳ,

ତାର ହୃଦେ ଲମ୍ବଇ ଫୁଲମାଳୀ । ୧୩୩ ।

ଫୁଲ ଚୂଳ କୁଣ୍ଡଳ, ପାଦ ପାଣି,

ସଙ୍ଗେ ସିନ୍ଧୁ କୁମାସ୍ୱ ପାଟରାଣୀ । ୧୩୪ ।

ତାର ସର୍ବଦା ନୀଳଗିରି ବସ,

ଅରଜୁନ ଦାସ ମନେ ଉଲ୍ଲାସ । ୧୩୫ ।



## ସପ୍ତମ ଛାନ୍ଦ

ସଙ୍ଗମନ୍ଥଆର ବାଣୀରେ ଗାଇବ

ଅମରଶିଖର କୁଷ୍ମାଂକୁନ୍ତଳାଗ୍ରରେ,
ଶୁଭନ୍ତେ ଚନ୍ଦନ ବନ ଲତା ଭିତରେ । ୧ ।
ଦକ୍ଷିଣ ପବନ ବହେ ସୁଗନ୍ଧ ଘେନି,
ନରନ୍ତଂରେ ଧୂମମସ୍ତ ଦଶଇ ଅବନୀ । ୨ ।
ମହାଗୋଳ ଶୁଭୁଅଛି କାରୁଣ୍ୟ ଧ୍ୱନି,
ଜଙ୍ଗମକୁ ପଣ୍ଡୁରଇ କୁମରମଣି । ୩ ।
କଣ୍ଟକ ନଟେ ଆସି ହୋଇଲେ ଗୁରୁ,
ଡେଙ୍କଳ ଶୁଭୁଅଛି ଅନେକ ଧ୍ୱନୁ । ୪ ।
ବାବୁ ମୁରମଳ ଯେହ୍ନ ଚନ୍ଦନ ବନ,
ଚଞ୍ଚଳ କରଇ ଯୋଗୀଜନଙ୍କ ମନ । ୫ ।
ଶୁକପୀକ ଝିଙ୍କ ନାନା ପଂକ୍ଷିଙ୍କ ଧ୍ୱନି,
କୁସୁମ ବରଷେ ମଧୁ ପିବେ ଅବନୀ । ୬ ।
ଲବଙ୍ଗ ଲତାକୁ ବେଢ଼ି ମଧୁପକୁଳ,
ମଧୁପାନେ ମତ୍ତ ହୋଇ କରନ୍ତଂ ଗୋଳ । ୭ ।
ଯୂଥ ଯୂଥ ହୋଇ ଚରେ କୁରଙ୍ଗୀମାନ,
କସ୍ପେ କାମଦେବର ଯେ ଉଦ୍ୟାନବନ । ୮ ।
ଏସନ ସମୟେ ଆସୁଅଛନ୍ତି ଲୋକ,
କୁମାରର କଥା କହି କରନ୍ତଂ ଶୋକ । ୯ ।
କେମନ୍ତେ ଜନନୀ ତାର ଦେହ ଧରିବ,
ବାହୁଡ଼ିଲ ବର ପୁଣି କପ କରିବ । ୧୦ ।

ଅଗ୍ନିରେ ପଶିବ ଯେବେ କନକ ଲତା,
ଆଉ କି ଜୀଇବ ସଖୀ ମଦନମତ୍ତା । ୧୧ ।
ପଥୁକା ଜନଙ୍କ ଠାରୁଂ ଏସନ ଶୁଣି,
କାତର ହୋଇ ପଶୁରେ କୁମରମଣି । ୧୨ ।
ରହ ରହ କହ ଭଲ କସ ବାରତା,
ଧର୍ମଧ୍ୱଜ ରଜା ଝିଅ କଲ୍ପଲତା । ୧୩ ।
ମଦନମତ୍ତ ବୋଲି ତାହାର ସଖୀ,
ସଖୀର ନିଧନେ ସେହୁ ହୋଇଛୁ ଦୁଖୀ । ୧୪ ।
ରତ୍ନମଣ୍ଡୋଳ ନୃପତି ସେ ପୁରନ୍ଦର,
ଅବନୀ ତିଳକ ବୋଲି ତାର କୁମର । ୧୫ ।
ପ୍ରତାପଞ୍ଚାଣ† ବୋଲି ତାହାର ଭାଇ,
ଅବନୀ ତିଳେକକୁ ସେ ବଶିଲ ଯାଇ । ୧୬ ।
ଭଣ୍ଡ ଦନେକ ଥାଉ ରଜାର କୁମାରୀ,
ପଇଡ଼େ ଝଟୂର ପିଇଲ ଲେମ୍ବାଉ ଗୋଳ ।୧୭ ।
ସସ୍ତିକ ମଣ୍ଡପ ତଳେ ରଇ* ସଜାଉ,
ଏଣୁକ୍ଷଣି ସଂସ୍କାର କରିବେ ବାଳୀ । ୧୮ ।
ଅମର ଶିଖର ଶୁଣି ପଡ଼ିଲ ଢଳି,
ମଧୁକର ମିତ ତାକୁ ଧଇଲ ତୋଳି । ୧୯ ।
ଶୋକେଣ କୁମରମଣି ଅତି କାତର,
ପାସୋରିଲ ମୃତ୍ୟୁସଞ୍ଜୀବନୀ ମନ୍ତ୍ର । ୨୦ ।
ନନ୍ଦନ ବନରେ ଫୁଲ ତୋଳୁ ସେ ଥିଲ,
କଳପତରକୁ ଛୁଇଁ ନିଯ୍ୟମ କଲି । ୨୧ ।

---

† ପ୍ରତାପ ପଞ୍ଚାନନ, * ରଇ-ଚଡ଼ା ।

ମୁଁ ତୋତେ ନ ଛାଡ଼ଇ ବୋଲି ତୋର ସପଥ,
କେମନ୍ତେ ଲଙ୍ଘିଲୁ ସଖି ସ୍ନେହ ସତ୍ୟ । ୨୨ ।
ଅନେକ ବିଳାପ ପଛେ କୁମର କଲା,
କୋଳେ ଧରି ମନ୍ତ୍ରୀ ସୁତ କର୍ଣ୍ଣେ କହିଲା । ୨୩ ।
ଆହେ ବଇଦ୍ଯପଯୋଗୀ ସର୍ବେଶ୍ୱର,
ତୁମ୍ଭଙ୍କୁ ସେ ଦେଲେ ମୃତ୍ୟୁଂଜୟ ମନ୍ତ୍ର । ୨୪ ।
ବିଳମ୍ବ ନ କର ବେଗ ହୋଇଣ ଯିବା,
ଅନଳେ ନ ପଶୁ କୁମାରୀକୁ ଦେଖିବା । ୨୫ ।
ଉଠିଲ ତୁରିତେ ଶୁଣି ନୃପ କୁମର,
ପ୍ରବେଶ ହୋଇଲେ ଶ୍ମଶାନ ଭୂମିର ।
ଗ୍ରାମୁଣ୍ଡିଆ ମଣ୍ଡିଳନ୍ତି ନେତ୍ର ପତନୀ,
ହୃଦରେ ଗ୍ରମର ନୃତ୍ୟ ହୁମାନ୍ତ ଯେଶ । ୨୭ ।
ରତ୍ନ ଚଉଦୋଳେ ଶୋଇଅଛି କୁମାରୀ,
ସଖୀଜନେ ବେଢ଼ି ତାକୁ ବିଳାପ କରି । ୨୮ ।
ଅଗର ଚନ୍ଦନକାଷ୍ଠେ ରଇ ସଜାଡ଼ି,
କର୍ପୂର କସ୍ତୂରୀ ଗନ୍ଧ ଘୃତନ୍ତ ଢାଳି । ୨୯ ।
ପ୍ରବେଶ ହୋଇଲେ ଯାଇ ତିନି ଜଙ୍ଗମ,
ସନ୍ନିକ ମଣ୍ଡପ ତଳେ କଲେ ବିଶ୍ରାମ । ୩୦ ।
ନଦୀରେ ପଶିଣ ସେହୁଁ ସ୍ନାହାନ କଲେ,
ମାହାଦେବ ପୂଜା ତୁରିତେଣ ସାରିଲେ । ୩୧ ।
ଚଉଦୋଳ ତଳେ ଯାଇ ଉଭା ହୋଇଲେ,
ହୋପଟ୍ଟୀ କଢ଼ାଇ କୁମାରୀକି ଦେଖିଲେ । ୩୨ ।
ଜଙ୍ଗମ ଦେଖି ଚହଳିଲ ମଦନମଞ୍ଜରୀ,
ଶୋକଭରି ହୋଇ କହେ ସକଳ କଥା । ୩୩ ।

ସନ୍ଦେଶ ପତ୍ର ନାହାକୁ ଦେଲ ମୋ ସଖୀ,
ସଖୀର ନୟନେ ସେହ୍ନ ଝଇଲ ଦେଖି । ୩୪ ।
ଜଙ୍ଗମ ହୋଇଲନ୍ତି ଯେତେ ମଲ ଯୁବତୀ,
ଜିଅଇ ପାରିଲେ କନ୍ୟାର ହୋଇବ ପତି । ୩୫ ।
ଜିଅନ୍ତେ ପୁଣ ନିକ କରନ୍ତି ଯେଥ,
ଭରସା କରିବା ଯେବେ କରିବେ ସତ୍ୟ । ୩୬ ।
ଶୁଣି ପରିବାରିମାନେ ବେଗେ ଧାମନ୍ତିଂ,
ପାଜ ପୁରୋହିତ ଆଗେ ଯାଇ କହନ୍ତିଂ । ୩୯ ।
ତିନିଗୋଟି ଜଙ୍ଗମ ସେ କାହ୍ନିଂ ଅଇଲେ,
ସଞ୍ଜିକ ମଣ୍ଡପ ତଳେ ପ୍ରବେଶ ହେଲେ । ୪୦ ।
ନଦୀରେ ସ୍ନାହାନ ସାରି ଶମ୍ଭୁ ପୂଜିଲେ,
କନ୍ୟା ଭେଟଦୋଳ ତଳେ ଯାଇ ହୋଇଲେ । ୪୧ ।
ମୃତ୍ୟୁଂଜୟେ ବୋଲି ତହିଂ ମେକ ଜଗମ,
କୁମାର ବୟସ ହେହିଂ ନୂଆ ମଦନ । ୪୨ ।
କମଳ ପାଖୁଡ଼ା ପ୍ରାୟେ ବେନି ନୟନ,
କୋକିଳହିଂ ଅଧିକ ତା ମୃଦୁ ବଚନ । ୪୩
କନକର କର କର କରି ତାହାର,
ଶୃଚର ସୁଗନ୍ଧ ତାର ଶୃରୁ ଚକୁର । ୪୪ ।
ଗଜେନ୍ଦ୍ରୁ ଜିଣି ତାର ସଂକୀର୍ଣ୍ଣ ମଝା,
ଅବନୀ ଆଗତ କି ସେ ଅବନୀ ରାଜା । ୪୫ ।
କୁମାରୀକି ଦେଖି ବୋଲେ ଜିଅଇବ ଏହା,
ସତ୍ୟ କରିଥିବ କନ୍ୟା କରିବ ବିହା । ୪୬ ।
ତୁମ୍ଭେ ସତ୍ୟକଲେ ଏକା ଜିଅଇ ପାର,
ଇଷାବର ବରୁ ପକ୍ଷେ ରାଜାକୁମାରୀ । ୪୭ ।

ଶୁଣିଣ ସାନନ୍ଦ ମନ୍ତ୍ରୀ ବୁଦ୍ଧିସାଗର,
କଅଇନ୍ଦ୍ରେ ପଗ୍ର ପରଦେଶୀ କୁମର । ୪୮ ।
କପ୍ପଡେଇ ବତୃର ପାଦ ପୁରୋହିତ ଦେନ,
ଜଙ୍ଗମ କତକ ସେଥୁ ଅଇଲେ ବେଜା । ୪୯ ।
ମୃତ୍ୟୁଂଜଯ୍ୟ ଜଙ୍ଗମକୁ ବୋଲନ୍ତି ତହିଂ,
ଅଇଲ କେବଣ ଦେଶୁଂ ଥିଲ ହେ କାହିଂ । ୫୦ ।
ରଜାର କୁମାରୀ ଯେ ଯେ କଳପଲତାଂ,
ପାଦ୍ମିଲେଣ ବଜ୍ର ମୃତ୍ୟୁ ବହୁଲ ଧାତା । ୫୧ ।
ହପୂର ଟେଇଶ୍ଚ ଖ'ଇ ଆଜ ରଜନୀ,
କେମନ୍ତେ ତଣବେ ତାର ତାତ ଜନନୀ । ୫୨ ।
କେବଣ ଦେବତା ତୁମ୍ଭେ ଜାଣି ନ ପାରି,
ଅନୁଗ୍ରହ କଲେ ଯେବେ ରାଜକୁମାରୀ । ୫୩ ।
ମଲ ଜିଆଇବ ଆନ ଭର୍ଜନ ନାହିଂ,
ଉପ୍ର ଅର୍ଜ୍ଜୁନଙ୍କ କଥା ଶୁଣିଲ ନାହିଂ । ୫୪ ।
ଅନନେ ଲଲଲ ଜେମା ଯେବେ ଜଇବ,
କାହାଗୁର ବୋଲେ ଅବା କିସ ବୋଲିବ । ୫୫ ।
ସତ୍ୟ ହେ ରାଜା କୁମାରୀ ତୁମ୍ଭଙ୍କୁ ଦେବ,
ତୁମ୍ଭର ଖରତ ଯୁଗେ ଯୁଗେ ରହିବ । ୫୬ ।
ମୃତ୍ୟୁଂଜଯ୍ୟେ ବୋଲେ ମୃତ ରାଜା କୁମାରୀ,
ଆମ୍ଭେ ଦୂର ଦେଶାନ୍ତର ଅଟୁ ଭିକାରି । ୫୭ ।
ଜଗନ୍ନାଥ ଆଜ୍ଞାଂରେ ଯେ ଯୋଗେ ଜଇବ,
ସତେ ହେ କ ଦେଶାନ୍ତର ଷାରକୁ ଦେବ । ୫୮ ।
ବୋଲ୍‌ଇ ମଦନମଞ୍ଜୁ ଯେ ତୁମ୍ଭର ନାରୀ,
ମୃତ୍ୟୁପିଣ୍ଡ ଆନ କେହୁ ଜିଆଇ ପାରି । ୫୯ ।

କେବଳ ସଖୀକ ମୋର କର କାରଣ,
ଜଗତପାଳେକ ଅମ୍ଭେ ତୁମ୍ଭ ଶରଣ । ୬୦ ।
ତୁମ୍ଭଙ୍କୁ ଦେଖିଲେ ବାଳୀ ବର ଇଚ୍ଛିବ,
ଯୋଗେଶ୍ୱର ସଙ୍ଗେ ଅବା ତୁମ୍ଭେ ନେଖିବ । ୬୧ ।
ସଖୀର ସଙ୍ଗତେ ମୁହିଂ ତୁମ୍ଭର ଦାସୀ,
ମୃତ୍ୟୁଂଜୟେ ଜଙ୍ଗମ ତା ଶୁଣିଣ ହସିଂ । ୬୨ ।
ମଧୁଯୋଗୀ ଜଙ୍ଗମ ଯେ ଚେଲା ଆମ୍ଭର,
କନ୍ୟା ଜୁଆଇଲେ ତୁମ୍ଭେ ହୁଅ ଯେହାର ।୬୩।
ଯେ କଥା ହୋଇଲେ କନ୍ୟା ଜଇବ ଯା ଯା,
ଯେଠାକୁ ଆସିଣ ସତ୍ୟ କରୁ ଛୋ ରାଜା ।୬୪।
ତୁ ଯାହା ବୋଲବୁ ତାହା ପାଳଣ ଥିବୁ,
କୁମାରୀ ବରଣବେଳେ ତୁହି ବରବୁ । ୬୫ ।
*ମଧୁଯୋଗୀ ଜଙ୍ଗମଯେ ଚେଲା ଆମ୍ଭର,
କୁମାରୀ ବରଣବେଳେ ଯେହାକୁ ବର । ୬୬ ।
ଜଙ୍ଗମ ବୋଲଇ ପାପ ତ୍ରୋହତ ଶୁଣ,
ନୃପତ ଅଇଲେ ଦେଖ ଆମ୍ଭର ଗୁଣ । ୬୭ ।
ବେଦେବ ଝିଅମାନଙ୍କୁ ମନ୍ତ୍ରୀ ରୁହାଇ,
ଧାତକାରେ ଠାକୁରଙ୍କୁ ଜଣାଅ ଯାଇ । ୬୮ ।
ସ୍ୱାମୁରେ ଜଣାଅ ଯାହା ଜଙ୍ଗମ କହି,
କଳପଲତା ତାରବେ ଅଇଲେ ବହି । ୬୯ ।
ଉଷତ ହୋଇଣ ବେଗେ ଝିଅ ଗଲେ,
ଧର୍ମଧ୍ୱଜ ରାଜା ଆଗେ ଯାଇ କହିଲେ । ୭୦ ।

---

* ଏହି ଧାଡ଼ିଟି ଦୁଇଥର ପୋଥିରେ ଅଛି ।

ଅପୂର୍ବ କଥାପ୍ରେ ମୋର ଶୁଣ ଗୋସାଇଂ,
ତିନ ଗୋଟି ଜଙ୍ଗମ ସେ ଅଛନ୍ତି ରହି । ୭୧ ।
ବୋଲନ୍ତି ନଷ୍ଟପ୍ରେଂ ଯେବେ ଜେମା ଜଇବ,
ସତ୍ୟ କରିଥିବ ରାଜା ଆମ୍ଭଙ୍କୁ ଦେବ । ୭୨ ।
ନୋହିଲେଣ ଇଚ୍ଛାବର ବରୁ କୁମାରୀ,
ମାହାରାଜା ହୋଇନକ ବଳନ୍ତ କରି । ୭୩ ।
ଶୁଣି ଧର୍ମଧ୍ୱଜ ରାଜା ଆନନ୍ଦ ହୋଇ,
ପାଠ ମାହାଦେଈ ଆଗେ ଯାଇଣ କହି । ୭୬ ।
ତିନଗୋଟି ଜଙ୍ଗମ ସେ ଅଇଲେ କାହୁଂ,
ଅନୁଗ୍ରହ କଲେ ତୋର ଜେମାକୁ ସ୍ନେହୁଂ ।୭୫ ।
କୁମାରୀ କଣ୍ଠରେ ସେହୁ ଅଛନ୍ତି ରହି,
ପାଠ ପୁରୋହିତ ପଠିଆଇଲେ କହୁ । ୭୬ ।
ଆତମ୍ଭ ବଜେ କଣ୍ଠାଇ ସତ୍ୟ କରିବା,
କୁମାରୀ ଜଇଲେ ଜଙ୍ଗମକୁହିଂ ଦେବା । ୭୭ ।
କାଞ୍ଚନ ନଗ୍ର ପଦ୍ମରେ ଗୁମ୍ଫା ତୋଳିବା,
କୁମାରୀ ସହିତେ ନେଇ ତହିଂ ଥୋଇବା ।୭୮।
ଅମୃତ କ ବରଷଣ କଲ ରଜନୀ,
ତପନ ହୋଇଲ କଲ୍ପଲତା ଜନନୀ । ୭୯ ।
ଅବକାଶ ହୋଇ ରାଜ୍ୟେ ବାହାରେ ବଜେ,
ବାରୁ ଲଗି ହୋଇ ବୀର କାହାଳୀ ବାଜେ ।୮୦।
ବଜେ କଣ୍ଠାଯାନ୍ତି ଧର୍ମଧ୍ୱଜ ନରେନ୍ଦ୍ର,
ତାରାଗଣ ମଧ୍ୟରେ କ ଅବନୀ ଚନ୍ଦ୍ର । ୮୧ ।
ବାରଛତ୍ର ଉଡ଼େ ତା’ର ଶିର ଉପରେ,
ଢୁଲଢୁଲ ଝରନ୍ତରେ ଗ୍ରମର ଢାଳେ । ୮୨ ।

ପ୍ରବେଶ ହୋଇଲେ ଆସି ନଗର ଭିତରେ,
ବିଜେ କଲେ ସ୍ଫଟିକ ମଣ୍ଡୋପ ଉପରେ । ୮୩ ।
ରତ୍ନ ସିଂହାସନେ ରାଜ୍ୟେ ବସିଲେ ତହିଂ,
ଲୋଚକ ବଢାଇ ନଉଦୋଳକୁ ଗୃହିଂ । ୮୪ ।
ହକରା କରାଇ ତନ ଜଙ୍ଗମ ନେଇ,
ସିଂହାସନ ତଳେ ତାଙ୍କୁ ଆସନ ଦେଇ । ୮୫ ।
ଯେଉଁକା ସେ ବସିଲା ମୃତ୍ୟୁଂଜୟେ ଯା ନାମ,
ଉଭା ହୋଇଛନ୍ତି ଦୁଇ ଗୋଟି ଜଙ୍ଗମ । ୮୬ ।
ନୃପତି ବୋଲନ୍ତି ତୁମ୍ଭେ କେବଣ ଦେଶୀ,
କାହିଂ ଥାଇ କାହିଂ ଏଥେ ହୋଇଲଇ ଆସି । ୮୭ ।
ଶୁଣିଣ କୁମରମଣି ହୋଇଲା ତୁନ,
ମଧ୍ୟଯୋଗୀ ଜଙ୍ଗମ ଯେ ବୋଲଇ ବାଣୀ । ୮୮ ।
ମଲ୍ଲାଳ ଦେଶର କୋଳାହଳ ନଗର,
ବଛଉଜ ଗିର ଯୋଗୀ ପରବେଶ୍ୱର । ୮୯ ।
ତହିଂ ଥିଲୁ ସେ ଆମ୍ଭର ଅନନ୍ତ ଗୁରୁ,
ଯେହ୍ନବସନ୍ତି ଅଇଲଉଂ ଅନେକ ଧୂରୁ । ୯୦ ।
ବିଦ୍ୟା ବିନୋଦ ବୋଲଇ ରାଜା ତହିଂର,
ନୃପତିର ଟୀକା ସାରଙ୍ଗର କୁମର । ୯୧ ।
ଅନେକ ଦେଶର ସେ ଯେ ରାଜା କୁମାର,
କେବେହେ କୁମରମଣି ନୋହିଲେ ବର । ୯୨ ।
ଅନେକ ମଣାଇଂଲେ ସେ ନଗର ନାହା,
କେବେହେ କୁମରମଣି ନୋହିଲେ ବିହା । ୯୩ ।
ଶୁଣିଣ କୋପ କଲକ ସେ ମହାରାଜା,
ଆଜ୍ଞାଂ ଦେଲେ ରାଜା ମୋର ରାଜ୍ୟରୁ ଯା ଯା । ୯୪ ।

ମନ୍ତ୍ରୀର ତନୟେ ମୃତ୍ୟୁଂଜୟ ସେହ୍ନାଙ୍କ ମିତ,
ମୃହ୍ନଂ ସଙ୍ଗେ ବାହ୍ୟାର ହୋଇଲା ଭୂଶତ । ୯୫ ।
ଯୋଗୀନ୍ଦ୍ର ଗ୍ରାମୁରେ ଦୁହେଂ ହୋଇଲୁଂ ଯାଇ,
ପ୍ରସନ ହୋଇଲେ ନାଥେ ଆମ୍ଭଙ୍କୁ ଗୃହିଁଂ । ୯୬ ।
ନାମ ଲବ୍ଧଇଣ ଆନ ନାମ ସେ ଦେଲେ,
ମୃତ୍ୟୁଂଜୟେ ମନ୍ତ୍ରଟି କର୍ଣ୍ଣେ କହିଲେ । ୯୭ ।

କୋଡ଼ିଏ ବରଷେ ଯେତ୍କୁ ମରଣ ଥିବ,
ଯେ ମନ୍ତ୍ର କର୍ଣ୍ଣେ କହିଲେ ଜିଇ ଉଠିବ । ୯୮ ।

ଶୁଣିଣ ଧର୍ମଧ୍ୱଜ ଯେ ଆନନ୍ଦ ହୋଇ,
କୁମରଙ୍କୁଂ ସିଂହାସନେ ଟେକିଲେ ବସାଇ । ୯୯ ।
ପବନ ହୋଇଲା ମୋର କର୍ମ୍ମାନ୍ତ ଦେଶ,
ଯେ ମୋର କଣ୍ଠକେ ତୁମ୍ଭେ ହେଲ ପ୍ରବେଶ । ୧୦ ।
ହୃଦ୍ର ପଇଡ଼ ଲଗି କଲ ମୋ ସମ୍ଭ୍ରି,
ତୁମ୍ଭ ଅନୁରାଗ ଲଗି ଛାଡ଼ିଲ ଦେହ୍ମ । ୧୦୧ ।

ଶୁଣିଣ ସୁରଶିଖର ବ୍ରହ୍ମଂ ହସିଲା,
କୁମାରୀ କଣ୍ଠରେ କୋଳ କଣ ବସିଲା । ୧୦୨ ।
ଚୁମ୍ବନ ଦେଇଣ କଲା ଅଧର ପାନ,
ମୃତ୍ୟୁଂଜୟ ମନ୍ତ୍ର ଗୋଟି କହିଲା କର୍ଣ୍ଣ । ୧୦୩ ।
ତକ୍ଷଣେ ସୁନ୍ଦରୀ ଆଖି ଫେଡ଼ି ଗୃହ୍ନିଲା,
ମଦନମଞ୍ଜୁ ସଖୀଙ୍କ କଥା କହିଲା । ୧୦୪ ।
ପଠ ନେଲା ଜଙ୍ଗମ ତ ନୋହିବ ଯେହ୍ନୁ,
ନଗର କନ୍ୟାକୁ ମୋତେ ଆଣିଲା କେଡୁ । ୧୦୫ ।
ବିଜୟ ଈଶ୍ୱର ମାଳଗିରି ନୃପତି,
ଭୃତ୍ୟଙ୍କର ଛଟଳେ ବାମେ ଛୁରି ବାନ୍ଧନ୍ତି । ୧୦୬ ।

ପୁରୁଷ ଉତ୍ତମ ପୁରୁଷୋତ୍ତମ ବାସ,
ଅରଜୁନ ଦାସ ତାର ଦାସର ଦାସ । ୧୦୭ ।
ଅପୂର୍ବ କଥାସ୍ୱେ ଶୁଣ ରସିକ ଜନ,
କଲ୍ପଲତା ତରୁଣୀ ପାଇଲୁ ଜୀବନ । ୧୦୮ ।
ଅମର ଶିଖର ତାର ଭେଟ ହୋଇଲା,
ଅବନୀ ତଳେକ ତାର ରାଜ୍ୟକୁ ଗଲା । ୧୦୯ ।
ଦ୍ୱିବଗ୍ରାଫ୍ଟ ଭଗବାନ ଭବନାଶନ,
କଉଚୁକେ ବଳସ୍ୱେ ରତ୍ନ ସିଂହାସନ । ୧୧୦ ।
ଆରତ ଭଂଜନ ସ୍ୱାମୀ ଆଗ୍ୟାଂ ଯେ ଦେବା,
ଶରଣ ଜନସ୍ୱେ ମୁହିଂ କରଇ ସେବା ।୧୧୧ ।
କମଳଣୀ ପତ୍ତି ଜଗନ୍ନାଥ ଚରଣ,
ଶିଶୁ ଅରଜୁନ ତହିଂ ପଶେ ଶରଣ । ୧୧୨ ।



# ଅଷ୍ଟମ ଛାନ୍ଦ

## ମୁନବର ବାଣୀରେ ଗାଇବ

ଉଠିବସିଣ କୁମାସ୍ତ, ମଦନମଞ୍ଜୁ ପଗ୍ଣର,
ହେ ସଖୀ ଯେତୁ ଚରିତ, କ ସପଗ୍ଣତ ଯେ । ୧ ।
ନନ୍ଦ ଭିତରକୁ ଆସି, ମଣ୍ଡୋପ ଭିତରେ ପଶିଁ,
ସୁପାତ୍ର ପଚାଇ ତହିଂ, ଅଛଇ ଶୋଇ ଯେ । ୨ ।
ଆକାଶ ମଣ୍ଡଣି କରି, ଜନ ଚମ୍ପରନ୍ତ ଧରି,
ବହୁତ ଶୁଭେ ବେହଲ, ଲୋକ ଗହଳ ଯେ । ୩ ।
କାହିଁର ଯେତୁ ଜଙ୍ଗମ, କହ ଗୋ ଯେହାର ନାମ,
କମାଯେ ଯେଠାରେ ଅଛୁ, ସଖୀକି ପୁଛୁ ଯେ ।୪।
କହଇ ମଦନମଞ୍ଜୁ, ହେ ସଖି ତୋହର ପିତା,
ଶ୍ରେଷ୍ଠ ନୃପତି କୁମର, ବରିଲ ବର ଯେ । ୫ ।
ବିଭା ହୋଇବାକ କାଳି, ପଇଡ଼ି କପୂର ମେଲି,
ପଖାଳ ମୋଣୋହିଂ ସଙ୍ଗେ ପିଇଲୁ ରଙ୍ଗେ ଯେ ।୬।
ମାଜଣା କରି ତୋ ଦାସୀ, ରାତି ହିଂ ମିଳଲେ ଆସି
ଖେଳନ୍ତି ସକଳ ବାଳୀ, ଦେଇ ହୁଳହୁଳି ଯେ ।୭।
ଜାଣିଲେ ଜୀବନ ନାହିଁ, ଆଦର କରଣ କାହିଁ,
ଦୁଃସହ କରନ୍ତି ଶୋକ, ସକଳ ଲୋକ ଯେ । ୮ ।
ଶ୍ମଶାନ ଭୂମିରେ ଆସି, ପାଦ ପୁରୋହିତେ ବସି,
ଦହନ ବିଧି କରନ୍ତି, ଚିତା ଜାଳନ୍ତି ଯେ । ୯ ।
ଯେସନ ସମୟେ ଆସି, ଦୁଇଗୋଟି ପରଦେଶୀ,
ସାଙ୍ଗଣ ଜଙ୍ଗମ ଦୂତ, ମିଳି ତୁରିତ ଯେ । ୧୦ ।

ଚନ୍ଦ୍ରଦୋଳ ଚଳେ ଉଭା, କୁସୁମ ସାଧୁକ ଶୋଭା,
ଚୋଦ୍ଦୋର ବଦନ ଦେଖି, ମଦନେ ଦୁଃଖୀ ସ୍ୱେ ।୧୧।
ବୋଲନ୍ତି ସ୍ୱେହ୍ନ କୁମାରୀ, ଦଳେର ଜଆଇ ପାରି,
ଅମ୍ଭଙ୍କୁ ଚେଚବେ ବରିବ, ବିଭା କରିବ ସ୍ୱେ । ୧୨ ।
ଶୁଣିଣ ସାନନ୍ଦ ମନ, ଆପଣେ ଅପି ରାଜନ,
ଜଙ୍ଗମ ଗ୍ଲମୁକୁ ନେଇ, ପାଶେ ବସାଇ ସ୍ୱେ । ୧୩ ।
ମୃତ୍ୟୁଂଜୟେ ବୋଲି ନାମ, ତହିଂରେ ଏକ ଜଙ୍ଗମ,
ନୃପତି ଆଗେ କହିଲେ, କହ୍ମ ଗୃହିଂଲେ ସ୍ୱେ ।୧୪।
ମଣ୍ଡଳ ନାମ ଦେଶରେ, ମଧୁବତୀ ନଦୀ ତୀର,
କଟକେ ସେ କୋଲାହଲ, ତହିଂ ଭୂପାଳ ସ୍ୱେ ।୧୫।
ସ୍ୱେକଇ କୁମର ତାର, ନାମ ଅମରଶିଖର,
କାମ କ ଈଶ୍ୱର ଦେନ, ଜାତ ଅବନୀ ସ୍ୱେ । ୧୬ ।
ଦେଖି ଦନେ ଦନେ ଚନ୍ତା, ଝୀକା ସାରିବାକ ପିତା,
ସଭା କୁମାରୀ ବହିବ, ବିଭା କରିବ ସ୍ୱେ । ୧୭ ।
କୁମର୍‌ ନକ୍ଷଂଇ ନାରୀ, ମହାପତ୍ତି କୋପ କରି,
ଜଙ୍ଗମ ସ୍ୱେହ୍ନ କୁମର, କଥା ସୁମରେ ସ୍ୱେ । ୧୮ ।
ଅବଧି ପୂରିଲ ଆଜ, ସୁଫଳ ହୋଇବ କାର୍ଯ୍ୟ,
ପଠି ଯେ ଜଙ୍ଗମ ନେଲ, ଦେନ ଅଇଲ ସ୍ୱେ । ୧୯ ।
ଉଠିଲ ଶୁଣି କୁମାରୀ, କୁମର ଚରଣ ଧରି,
ପ୍ରଲମ୍ବ କରି ଶୋଇଲ, ସଖୀ ବୋଇଲ ସ୍ୱେ । ୨୦ ।
ଶୁଣ ତୁ କୁମରମଣି, ତାରିଲୁ ତୋର ରମଣୀ,
ଜଗତ ଯାକ ଜିଣିଲୁ, ମୋତେ କିଣିଲୁ ସ୍ୱେ । ୨୧ ।
ମଦନମଞ୍ଜରୀ ବାଣୀ, ଶୁଣିଣ କୁମର ମଣି,
ଲୋଚନୁ ବହଇ ପାଣି, ବୋଲଇ ବାଣୀ ସ୍ୱେ ।୨୨।

ଶୁଣ ଗୋ ମଦନମଞ୍ଜି, ତୋ ସଖୀ କଳପଲତା,
    ମୂର୍ଖ ବୁଦ୍ଧି ସେକ କଲା, ବିଷ ଖାଇଲା ସେ । ୨୩ ।
ସେ ଯେବେ ଜୀଅନ୍ତା ନାହିଁ, ମୁଁ ପୁଣି ରହନ୍ତି କାହିଁ,
    ଅନଳ ଜାଳି ପଶନ୍ତି, ସିନ୍ଧୁ ଝାସନ୍ତି ସେ । ୨୪ ।
କରୁଣାନିଧିଙ୍କ ବଳେ, ସେ ଯେବେ ଜୀଇଲା ବେଳେ,
    ସୁଫଳ ଜୀବନ ମୋର, ଧନ୍ୟ ତୋହର ସେ । ୨୫ ।
କୁମର ସେତେକ କହି, କୁମାରୀ ତହିଁକି ନାଇ,
    ପଟ୍ଟ ଯେ ଗଳରେ ଥିଲା, କନ୍ୟାକୁ ଦେଲା ସେ । ୨୬ ।
ମଦନମଞ୍ଜିକୁ ଚାହିଁ, ଅଳସ ହସିଲା ହୋଇ,
    କୁମାରୀ ପଟ୍ଟ ଦେଖିଲା, ସଖୀକି ଦେଲା ସେ । ୨୭ ।
ବୋଲଇ ସୁରଶିଖର, ଶୁଣରେ ଯୁବତୀବର,
    ସେବେ ତୁ ବଞ୍ଚିଣ ଅଛି, ରାଇଲେ ଯାସି ସେ । ୨୮ ।
ସେତେକ ବୋଲିଣ ତହିଁ, କୁମର ମଣ୍ଡୋପେ ଯାଇ,
    ରାଜାଙ୍କୁ ଦର୍ଶନ କଲା, ଭଳ ହୋଇଲା ସେ । ୨୯ ।
ବୋଲନ୍ତି ନୃପତିବର, ଶୁଣସି ତୁମ୍ଭେ କୁମର,
    କୁମାରୀ କେମନ୍ତେ କଲା, ତରି ପାରିଲା ସେ । ୩୦ ।
ଜୀଇଲା କୁମାରୀ ବେଳେ, ତୁମ୍ଭର ଭାଗ୍ୟର ବଳେ,
    ଆପଣେ ବିଜେ କରିବ, ତୁମ୍ଭେ ରାଇଜ ସେ । ୩୧ ।
କୁମର ବଚନ ଶୁଣି, ଉଠନ୍ତି ନୃପତି ମଣି,
    ସାନନ୍ଦ ସକଳ ଲୋକ, ତହିଁ ପୁଲକ ସେ । ୩୨ ।
ବିଜୟେ କରିଣ ରାୟେ, ମଣ୍ଡୋପ କଡରେ ହୋୟେ,
    ସକଳ ସାମନ୍ତ ଘେନି, ଥାଟ ସଇନ ସେ । ୩୩ ।
ହସ୍ତୀ ଘୋଡାମାନ ଚଳି, ସେଙ୍କକୁ ଆରେକ ବଳି,
    ସମସ୍ତେ ଅଛନ୍ତି ଚାହିଁ, ତବଦ ହୋଇ ସେ । ୩୪ ।

ଅପଣେ ରବନ୍ତ ରହେ, ଆସ ଗୋ ମୋହୋର ମାହେ,
ନୟନ ସୁଫଳ କର, ଥକୁଲ ହର ହେ । ୩୫ ।
ଶୁଣିଣ କଳପଲତା, ସାଙ୍ଗେଣ ମଦନମତ୍ତା,
ଦେନଣ ବାହାର ହୋଇ, ପିତାଙ୍କୁ ଗୃହଂ ହେ ।୩୬।
ପିତାର ଚରଣ ଧରି, ପ୍ରଲମ୍ବ କଲ କୁମାରୀ,
ଜଗତ ସକଳ ଲୋକ, ଛାଡ଼ିଣ ଶୋକ ହେ । ୩୭ ।
ଆନନ୍ଦେ ଲୋଚନେ ବାରି, ନୃପତି ନୟନୁ ଝରି,
କୁମାରୀ କୋଳେ ଧରିଣ, ଶୋକ ହରିଣ ହେ । ୩୮
ଦିବ୍ୟ ପଲ୍ୟଙ୍କରେ ନେଇ, ଜେମାଙ୍କୁ ବଜେ କସାଇ,
ମୁଦ୍ରଣ ରତ୍ନ ଯୋଡ଼ି, ଛତ୍ରନ୍ତ ଧରି ହେ । ୩୯ ।
ବାଜିଲ ଢମକଗୋଳ, ଶଙ୍ଖ ମହୁରୀ ବହଳ,
ଆଲମ୍ବ ଛତ୍ର ଚାମର, ଚଳିଲେ ବଳ ହେ । ୪୦ ।
ନୃପତି ହୋଇଲେ ସଜ, ଆରୋହଣ ମତ୍ତ ଗଜ,
କୋଳେଣ କୁମର ତା'ର, ଦିଶେ ସୁନ୍ଦର ହେ । ୪୧।
ଚଢିଣ ତୁରଙ୍ଗ ଉପର, ମାଳତୀ ସେ ମଧୁକର,
ମନ୍ତ୍ରୀ ତାର ବସା ଆଗେ, ନୃପତି ସାଙ୍ଗେ ହେ । ୪୨ ।
ପଛ ପଛୁ ଅରେ ରହେ, ବିଜୟେ କରିଣ ଯାହେ,
ମଧ୍ୟରେ କଳପଲତା, ମଦନମତ୍ତା ହେ । ୪୩ ।
ସହସ୍ରେକ ପରିବାରୀ, ଛତ୍ର ଚାମରନ୍ତ ଧରି,
କୁସୁମ ବୃଷ୍ଟି କରନ୍ତ, ହୁଳହୁଳି ଦ୍ୟନ୍ତ ହେ । ୪୪ ।
ପୁରି ନବରରେ ଯାଇ, ଶୁଭେ ବରବେଶ ହୋଇ,
କୁମାରୀ କୁମର କର, ଧରି ଭିତର ହେ । ୪୫ ।
ରାଣୀ ମହାଦେଈ ଯେନ, କଳପଲତା ଜନନୀ,
କରନ୍ତ କନ୍ୟାକୁ କୋଳ, ଲୋତକ ଢୋଳ ହେ ।୪୬

ଚୁମ୍ବିଣ କୁମାରୀ ମୁଖ, ଘୁଡ଼ଣ ସକଳ ଦୁଃଖ,

ବସନ ରତ୍ନ ବାନ୍ଧନ୍ତ, ଦାନ୍ତ ଅଷ୍ଟ ଯେ । ୪୭ ।

ମାଲଗିରି ଜଗନ୍ନାଥ, ଶଙ୍ଖଚକ୍ର ଚତୁର୍ହସ୍ତ,

ରଥ ବିଜୟ୍ନକୁ ଅନା, ଶୁଣ ହେ ମନା ଯେ । ୪୮ ।

ଶ୍ରୀଅଙ୍ଗେଣ ପଣ୍ଡା ସେନା, ଛୁରି ବୀରବର ବାନା,

ବିବିଧ ଉଡ଼ାଉ ଲଗି, ଯୋଗୀ ଯା ଜାଗି ଯେ ।୪୯।

ଅଭିନବ ମୁଖ କଳା, ଶୁକ୍ଳ କମଳ ତୋଳା,

ସୁରଙ୍ଗ ଅଧର ରକ୍ତା, ସୋଲରଂ କତା ଯେ ? ୫୦ ।

ବାଲଗଣ୍ଡି ପରବେଶ, ରହିଣ ନବ ଦିବସ;

ଶିଶୁ ଅରଜୁନ ଦାସ, ମନେ ଉଲ୍ଲାସ ଯେ । ୫୧ ।



# ନବମ ଛାନ୍ଦ

ରାଗ—ଗୁଜ୍ଜରୀ, ରାମଦଣ୍ଡ ପ୍ରଥମ ଛାନ୍ଦ ବାଣୀରେ ଗାଇବ

ସେଥୁଁ ଅନନ୍ତରେ ଧର୍ମଧ୍ୱଜ ନୃପବର,
କୁମରଙ୍କୁ ଦେଲ ଚନ୍ଦ୍ରିଂ ବେଗଲ (?) ନବର ହେ । ୧ ।
ମନ୍ତ୍ରୀ ଗ୍ରାଇଣ ଆଗ୍ୟାଂ ଦେଲେକ ନୃପତି,
କୁମର କଟରେ ଖଟିଥିବ ଦେବାଗ୍ରତ ହେ । ୨ ।
ପାଟ ପୁରୋହିତ ଯେତେ ପରିବାର ଜନ,
କୁମର ଦେଖିଲେ ହୋଏ ଆନ୍ଥର ଦ୍ରଶନ ହେ । ୩ ।
ଝିଡ଼ା ମୃଦୁସୂଲି ଯେତେ ଅନ୍ତଃପୁର ଦାସୀ,
କୁମର କଟରେ ଖଟିଥିବ ଦେବାଙ୍ଗଣି ହେ । ୪ ।
ମୋଟେଣ୍ଣାଙ୍କୁଂ ଯୋଗାଡ଼ ଦେବ ନାନା ଉପହାର,
ମହାରାଜାମାନଙ୍କର ଯେସନ ବେଗ୍ରର ହେ । ୫ ।
ଦ୍ୱଞ୍ଜ ସାମଗିରମାନ ସମସ୍ତ ଭିଆଅ,
ଧିର ରାଜାମାନଙ୍କୁ ନିମନ୍ତ୍ରଣ କରାଅ ହେ । ୬ ।
ଯୁଣେ ପରିପଟ୍ଟେ ଛାମୁଣ୍ଡିଆ ତୋଳାଇବ,
ଛାମୁଣ୍ଡିଆ ମଝି ଦ୍ୱଞ୍ଜ ମଣ୍ଡପ ହୋଇବ ହେ । ୭ ।
କନକର ପୀଢ଼ ! ବ୍ରହ୍ମ ଜାତି ହୀର ସ୍ତମ୍ଭ,
ମଣିମୟ ଖମ୍ବ ସେହୁ ହଟିବ ଆରମ୍ଭ ହେ । ୮ ।
କମମୟ କାଣ୍ଡ ଯେ ଦ୍ରବୋଳ ରୁଅ ଶେଣୀ,
ନନ୍ଦାବ୍ରତ ଫୁଲ ଥିବ ପଦ୍ମରାଗ ମଣି ଯେ । ୯ ।
ଗୁନ୍ଦୁଆ ଇନ୍ଦ୍ରଗୋବନ୍ଦ ପାଟେ ସିଆଁଇବ,
ମୁକୁତାର ଥୋପା ଝରା ଝୁମ୍ପା ଖଞ୍ଜିଥିବ ହେ । ୧୦ ।

ନେତ ଶେତ ଚାମର କୁସୁମ ମାଳ ମାଳ,
ସୁବର୍ଣ୍ଣ କଳସେ ନେତ ପତନ ଚଉଳ ହେ । ୧୧
ଚନ୍ଦୁଆ ଖମ୍ବେକେ ଚନ୍ଦୁଆ ସିଂହାସନ,
ପଞ୍ଝୁଠାରେ ଖଞ୍ଜିଥିବ ମଣିଗଣମାନ ହେ । ୧୨ ।
ମଉଡ଼ୁକ ସମ୍ଭାର ସକଳ ଜାତ ସଜ.
ଭଲ ଜାତି ବାଛିବ ଯେତେକ ମତ୍ତଗଜ ହେ । ୧୩ ।
ସହସ୍ରେକ ପରିବାରୀ କୁରଙ୍ଗୀ ନୟନୀ,
ଅଲଙ୍କାର ଲଗଥିବେ ଚାମରଚନ୍ଦ୍ର ଯେନ୍ନ ହେ ।୧୪ ।
ଘୁମୁଣ୍ଡିଆ ତଳେ ଉପାଟିଆମାନ ଗଢ଼,
ସୁନା ରୂପା ମାନଙ୍କ ବାଡ଼ିବ କୁଡ଼ କୁଡ଼ ହେ । ୧୫ ।
କର୍ପୂର କସ୍ତୁରୀ ଠାବେ ଠାବେଣ ଥୋଇବ,
ନେତ ପାଟମାନଙ୍କରେ ଚୂର ରଖାଇବ ହେ । ୧୬ ।
ସୁନା ରୂପା କୁଣ୍ଡେଣ ଚନ୍ଦନ ଘୋଳ ଥିବ,
ବାଜେଣିଆଠାରୁ ଆସ୍ୱେ ଦାସ୍ୱେମାନ ଦେବ ହେ । ୧୭ ।
ମେଲ୍ଲ କାଠମାନ ନୂଆ ନେତେଣ ନବାଡ଼,
ଘୁମୁଣ୍ଡିଆ ତଳେ ନେତ ଖରଡ଼ନ୍ତ ପାଡ଼ ହେ । ୧୮ ।
ଯେତେବେଳେ ଯେହୁ ଯାହା ମାଗିଲେ ପାଇବ,
ଭଣ୍ଡାର ଫିଟାଇ ନିରନ୍ତରେ ଦେଉଥିବ ହେ । ୧୯ ।
କଟକ ଭିତରେ ଯେତେ ବନ୍ଦୀ ଗୁଡ଼ ଛଅ,
ଯାହାର ଯେତେକ ଧନ ଭଣ୍ଡାରରୁ ନିଅ ହେ । ୨୦ ।
ଘରେ ଘରେ ପାତାଙ୍ଗ କଳସ ଫୁଲନାନ,
ବେଦୀକ ବେଢ଼ି ବସିବେ ସକଳ ଭୂପାଳ ହେ । ୨୧ ।
ସୂପକାର ମାନେ ଯେ ରନ୍ଧଣା କରୁଥିବେ,
ବନ୍ଧୁ ବଢ଼ାଇଣ ଲୋକେ ଭୋଜନ କରିବେ ହେ । ୨୨

ଅକ୍ଷତମାନ ପଦ ପଦ କୁଢ଼ାଇବ,
  କଣ୍ଟକ ଯାକେଣ ସବୁ ଶୀତଳ ବଢ଼ାଇବ ହେ । ୨୩ ।
ଯେତେଦୂର ଦେଉଳ ଗଣିକାମାନ ଆଣି,
  ସୁବେଶ ହୋଇଣ ଆସିବ ତନୁ ଖଟଣୀ ହେ । ୨୪ ।
ଜନ୍ମତିଥ ରାଇ ଶୁଭଲଗ୍ନ ହେବ୍ରରବ,
  ଭଲ ବେଳ ଦେନ ବେନ କୁମର ବରିବ ହେ । ୨୫ ।
ଯେତେକ କହିଣ ରାପେ ଭିତରକୁ ଯାନ୍ତି,
  ପାଠ ମାହାଦେଇଙ୍କ ସୁଶୀଳାକୁ ହକାରନ୍ତି ଯେ । ୨୬ ।
ବୋଲନ୍ତି ହଭୁର ହର୍ଷ ଜ୍ଞାନ ଜପ କରି,
  ସକଳ କରନ୍ତୁ ଆଜ ଅନ୍ତେଷ୍ଟୁର ନାରୀ ଗୋ । ୨୭ ।
ଆଗ୍ୟାଂ ପାଇ ବାଜନ୍ତ୍ରିକ ହର୍ଷ ଗୀତ ଗୋଳ,
  ହୁଳହୁଳି ଶବଦେ କି ସମୁଦ୍ର ଉଛୁଳ ହେ । ୨୮ ।
ସୁବେଶ ହୋଇଣ ଧାଇଂ ମୃଦୁସୁନ୍ଦ୍ରି ବାଳୀ,
  ନବନ୍ତୁ ବାହାର ହୋଇ ଯାନ୍ତୁ ପାଣି ତୋଳି ହେ । ୨୯
ମଙ୍ଗଳ ମନ୍ତ୍ରସ୍ତ ଶଙ୍ଖ ଶବଦ ସେ ବାଣୀ,
  . ପଢ ହାସ୍ୟ ଗୀତ ରସ ଗାବନ୍ତି ଗାୟେଣୀ ଯେ । ୩୦ ।
ସୁବର୍ଣ୍ଣ କୁମ୍ଭେଣ ଜଳଟାସୂକ ଶ୍ରୀଫଳ,
  ରଣଝଣ ନେପୁର ନବରସ୍ଥଳ ହେ । ୩୧ ।
ନୃପବର ଯେମନ୍ତ ବୋଲିଣ ଆଗ୍ୟାଂ ଦେଲ,
  ଦିନକର ମଧ୍ୟେ ପାଷ ସବୁ ଭିଆଇଲ ହେ । ୩୨ ।
ରାଜାଙ୍କୁ ନମନ୍ତି ଦୂଷ୍ଟ ସେହ୍ୱକ୍ଷଣି ଗଲେ,
  ଶ୍ରୀହସ୍ତ ପଣନ୍ତ ଦେଇ ବସେଇ କହିଲେ ହେ । ୩୩ ।
ଝଲପଲଟା କୁମାରୀ କାଲି ହେବ ବହା,
  ଦୁଃଖନାଶନ କଟକକୁ ଚଳ ନର ନାହା ହେ । ୩୪ ।

ଦିନକର ନାଥ ମେରୁ ଓହାଡ଼େ ପ୍ରବେଶ,
ସଂପୂର୍ଣ୍ଣ ଚନ୍ଦ୍ରମା କାନ୍ତି ଦିଶେ ଦଶଦିଶ ହେ । ୩୫ ।
ରଘୁନାଥ ଆଗମନରେ ବିଚ୍ଛେଦ ଚକ୍ରବାକୀ,
ବିଯୋଗୀ ବେଦନା ମନ୍ମଥ ଯେସ୍ନେ ସାକ୍ଷୀ ହେ । ୩୬ ।
ଧର୍ମଧ୍ୱଜ ରାଜାର ଯେତେକ ନରନାରୀ,
ରଜନୀ ବଞ୍ଚିଲେ ସେହୁ ଦିବସ ଆତୁର ହେ । ୩୭ ।
ରାସ ପହରକ ଥାଉଁ ବାଜିଲା ଠମକ,
ଧାଆଁଧାଇଁ ହୋଇ ରାଜା ନିଯୋଗୀ ସେବକ ହେ ।। ୩୮
ପରିବାରୀ ସକଳ କୁମାରୀପୁରେ ସଖୀ,
ଯଥାବିଧି ମାର୍ଜଣା କରନ୍ତି ଶୁଭ୍ରକେଶୀ ହେ । ୪୦ ।
ମଦନମଞ୍ଜରୀକୁ ସ୍ନାନ କରି ଏହିମନ୍ତ,
ଶ୍ରୀଅଙ୍ଗ ପୋଛିଣ ଦିବ୍ୟ ଦୁକୂଳ ପିନ୍ଧାନ୍ତି ହେ । ୪୧ ।
ବିଚଣିର ବାତେ ଶୁଖାଇଲେ ସୁରୁକେଶ,
ମଙ୍ଗଳ ଗୀତ କାମିନୀ ଗାବନ୍ତି ହରଷ ହେ । ୪୨ ।
ସୁଗନ୍ଧ ବିବିଧ ଫୁଲେ କବରୀ ଖୋସିଲେ,
ଜଗଜଣ୍ଣ କାମଶର ଶରଣ ପଶିଲେ ହେ । ୪୩ ।
ମଣ୍ଡିଲେ ମୁକୁତାଜାଲି କବରୀକି ବେଢ଼ି,
ବଦନଚନ୍ଦ୍ରକୁ କି ସେ ତାରକା ବେଢ଼ି ହେ । ୪୪ ।
ମୁକୁତା ସୀମନ୍ତି ଟିକା ମଣିମୟ ରାଗ,
ଅଧର ପାଇଲା ବିମ୍ବା ଲେଳେ କଣଚ ନାଗ ହେ । ୪୫ ।
ସତ୍ୟଯୁଗ ତାଙ୍କ ତପନ ତରାସ,
ମୁନିଜନ ମନମୃଗ ପାରିଧିର ପାଶ ହେ । ୪୬ ।
ତିଳଫୁଲ ନାସାରେ ଲଲଇ ଗଜମୋତି,
ସୁଧାକର ଭିତରେ କି ସୁର ଗର ଜ୍ୟୋତି ହେ । ୪୭ ।

କପୋଳେ କସ୍ତୁରୀଘଟିତା ମନୋହର ଧଣି,
ରାହୁଂ ଗରସଇ ନେହେ ପଉର୍ଣ୍ଣମୀ ଶଶୀ ହେ । ୪୮ ।
ମରକତ ଅବତଂସ ଇନ୍ଦୀବର ଫୁଲ,
ନଅର୍କ ହୋଇଲ ଦୁଇ ନୟନର ତଲ ହେ । ୪୯ ।
କମ୍ବୁକଣ୍ଠେ କୁବଳୟ ଫଳ କଣ୍ଠମାଳ,
ଶୋଭିତ ଯେହ୍ନ ଶ୍ରୀନିବାସ ଝରେ ଗଙ୍ଗାଜଳ ହେ । ୫୦ ।
ଭଇ ସଂଚ କଠିନ କୋମଳ ଘନ ସ୍ତନ,
ସୁର ସିଦ୍ଧ ମୁନିଜନ ବନ୍ଦୀ ହୋଇଯେ ମନ ହେ । ୫୧ ।
କମଳ ମୃଣାଳକରେ କଙ୍କଣ ବଳୟେ,
ବାରିତର ଶବ୍ଦ ମୃଦୁ ଦିନକର ଗଞ୍ଜେ ହେ । ୫୨ ।
କଟୀରେ ମେଖଳୀ ନାଭିରେ ବ୍ରହ୍ମକାନ୍ତ ମଣି,
କାମଦେବ ଅଭିଷେକ ସିଂହାସନ ଯେନି ହେ । ୫୩ ।
ଶ୍ରୀପଦରେ ନୂପୁର ପାହୁଡ଼ ଝଣେ କରି;
ସୁବେଶ ସାରିଲେ ଦୁଇ ସଖୀଙ୍କି ଚତୁରୀ ହେ । ୫୪ ।
କୁପାର କୁଟିଳେଣ ପୁରୁଷୋତ୍ତମ ନଗର;
ଜଗନ୍ନାଥ ବୋଲିଣ ତହିଂ ନୃପବର ହେ । ୫୫ ।
ରାତ୍ର ଘଡ଼ି ସାତ ମାନେ ଫୁଲ ଆଯେ ନାଇ
ଝେହ୍ନ ଝେହ୍ନ ହସନ୍ତ୍ରି କମଳା ମୁଖ ଚାହିଂ ହେ । ୫୬ ।
ବଲ୍ଲଭ ନାମେଣ ଭୋଗ ମୋଣୋହିଂ ବଢ଼ାଇ
ଯେହ୍ନ ପଡ଼ାବନ୍ତି ସବୁ ଲୋକନ୍ତ୍ର କହାଇ ହେ । ୫୭ ।
ବୀରଛନ୍ଦ ଧରାଇ ବାହାରେ ହାଙ୍କକରି;
ଦୁଇଧାଡ଼ି ଦାହୁଡ଼ି ଧରନ୍ତ୍ରି ସୁରନାରୀ ହେ । ୫୮ ।
ବଡ଼ଅ ନାଗି କରାନ୍ତ୍ରି ବରୁଣ କୁମାରୀ
ଶିରେ କର ଯୋଡ଼ିଣ ବୋଲେ ହରି ହରି ହେ । ୫୯ ।

ଫୁଲ ପକାଇଣ ଦେବତାଙ୍କ ପାୟେ ପଡ଼ି
ଯେ ଯାହାର ଘରକୁ ସେ ବୋଲିଣ ବାହୁଡ଼ ହେ । ୭୦ ।
ନାଅବକାଶେ ବାଜନ୍ତେ ଲକ୍ଷ୍ମୀଙ୍କ ବିଳାସ
ଉପନ୍ତ ହୋଇଣ ବୋଇଲେ ଅରଜୁନ ଦାସ ହେ । ୭୧ ।
ସେମନ୍ତେ ଦେଖିଲେ ଜଗନ୍ନାଥ ନେତ୍ର ଦେଖି ତୋଳେ
ମୁକତି ସନ୍ଦେଶ ନାହିଁ ଗୁରୁଦେବ ବୋଇଲେ ହେ । ୭୨ ।



# ଦଶମ ଛାନ୍ଦ

( ଶ୍ରୀରାମଚନ୍ଦ୍ର ବହିଲେ ସିଦ୍ଧ ବାଣୀରେ ଗାଇବ )

ପାହି ରଜନୀ ଉଦେ ଦିବାକର ।
ନରପତି ହକାରିଲେ କୁମର ।
ବୋଲନ୍ତି ବେଗେ ତୁମ୍ଭେ ଜାଣେକର ।
ଶୁଦ୍ଧ ହେଲେ ବେନି କୁମର ବର । ୧ ।

ଅଜ୍ଞାଂ ପାଇ ପ୍ରତାପ ପଞ୍ଚାନନ,
ମନ୍ତ୍ରୀଙ୍କି ଘେଇ ବୋଲଇ ବଚନ ।
ବେଗେ ସକଳ ବଳ ସଜକର,
ସମସ୍ତେ ଯାଇ ବହିବା ବର । ୨ ।

ଶୁଣି ସାନନ୍ଦ ପାତ୍ର ଅଜ୍ଞାଂ ଦେଲା,
ଚିବିଧ ବଳ ଯେ ସଜ ହୋଇଲା ।
ବାଜିଲା ଝମ୍ପକ ନିଶାଣ ଗୋଳ,
ମିଳିଲେ ଆସି ସକଳ ଭୂପାଳ । ୩ ।

ବେଦୀକ ବେଢି ଯେତେ ସିଂହାସନ,
ବସିଲେ ଯାଇ ନରପତି ମାନ ।
କୁମର ସାମନ୍ତ ସାଙ୍ଗରେ ଘେନ,
ବର ଆଣିଲେ କୁମର ବେନ । ୪ ।

ମୁକୁତା ମୋଣ୍ଡୋପେ ବସାଇଲେ ବର,
କହିଲେ କ୍ଷିତିପତି ଛାମୁର ।
ବିବିଧ ବାଦ୍ୟ କେହ୍ନ ପରମାଣି,
କାହାର ବୋଲ କେହୁ ନଶୁଣି । ୫ ।

ଗାବନ୍ତି ମଙ୍ଗଳ ମଧୁର ଗୀତ,
ହୁଳହୁଳି ପଡ଼େ ବହୁତ ।
ରଜନ ସାରି ନିତ୍ୟକର୍ମ ମାନ,
ଆପଣେ ହୋଆନ୍ତି ବୀର ବେଶେ । ୬ ।
ସୁଗନ୍ଧ କୁସୁମେ ନିର୍ମିତ ଗନ୍ଧ,
ଲଲଟ ଶିଖା ଦିଶିଲ ଶୋଭା ।
କର୍ପୂର କସ୍ତୁରୀ ସାଙ୍ଗେ ଭୋଜନ ପାନ, .
ଶ୍ରୀଅଙ୍ଗେ ଚତୁଃସମ ଲେପନ । ୭ ।
ଅମଳ ବର୍ତ୍ତୁଳ ମୁକୁତା ମାଳ,
ମାଣିକ ନାୟକ ସମତୁଲ ।
ଲମ୍ବନ୍ତି ହୃଦେ ଧଂଚ ସଂଚ ହୋଇ,
ନୟନ ନବାହ୍ନଜେ ବୃହ୍ମଂ । ୮ ।
ଶ୍ରବଣ କୁଣ୍ଡଳେ ରତ୍ନ କାନ ଫୁଲ,
କନେଷ୍ଟ କୋଷ୍ଠୀ ତହିଂର ମୂଲ ।
ବିବିଧ ଉଡ଼ାଜ ଲଗି ହାର ରଚ୍ୟେ,
ମୁକୁତା ଚକ୍ରକାରେ ବିଜୟେ । ୯ ।
ସକଳ ଲୋକ ଦର୍ଶନ କଲେ,
ପଚ୍ଛୁଆର ରେଖ ରହିଲେ ।
ଭଟ୍ଟରମାନେ କୟେ ଖର କରେ,
ବୀରଛନ୍ଦ ଉଡ଼େ ଛାମୁରେ । ୧୦ ।
ପୁରୋହିତ ଛାମୁକୁ ଯାଇ ବୀରବର,
ବୋଲନ୍ତି ବେଗେ ବରଣ କର ।
ଆଗ୍ୟାଂ ପାଇଣ ପୁରୋହିତ ମନ୍ତ୍ରୀ,
ବରକୁ ବେଦୀକି ନିଅନ୍ତି । ୧୧ ।

ବାଜଇ ମଙ୍ଗଳ ମଧୁର ଧ୍ୱନି
ମୁଖ ଶବଦେ ପୂରଇ ଅବନୀ ।
ନାଚନ୍ତି ଅପସରା ଗଣ ମିଳି,
ନାରୀମାନେ ଦିଅନ୍ତି ହୁଳହୁଳି । ୧୨ ।

କରନ୍ତି ବରଣ ବେନି କୁମର,
କାଚେ ସେ କେଶବ ପୁରନ୍ଦର ।
ସାଙ୍ଗେ ସକଳ ପରିବାରୀ ମିଳି,
ଲୁଣ ଚଉଂରୀ ପୂଜନ୍ତି ବାଳୀ । ୧୩ ।

ନୃପତି ବେଦୀକି ବିଜୟେ କଲେ,
କୁମାରୀଙ୍କି କୋଳେ ଦେନି ବସିଲେ ।
ଶୁଭେଣ ସରଳକ ବରଣ,
କୁମାର କୁମାରୀ ହାଥ ଯୋଡ଼ଣ । ୧୪ ।

ମନ୍ତ୍ରୀର କୋଳରେ ମଦନମନ୍ତ୍ର,
ଯେସନେ ମନସିଜ ବନିତା ।
ସକଳ ନୃପତି ଯଉତୁକ ଦେଲେ,
ବେନି କୁମର ଜୟ ହୋଇଲେ । ୧୫ ।

ଗହଳ ଧନୋଳ ନୃପ ସଦନ,
ଚନ୍ଦନେ ମେଦନୀ କର୍ଦ୍ଦନ ।
ବୋଲନ୍ତି ଏକ ଆରେକେ ତତ୍ତ୍ୱସମ,
ମେଦନୀ ପଙ୍କ ହୋଏ କର୍ଦ୍ଦମ । ୧୬ ।

ଖୀନବରକୁ ବରକନ୍ୟା ଗଲେ,
ଦୁଇଠାବ ହୋଇ ଦୁହେଂ ବସିଲେ ।
ହମାଳୀ କରନ୍ତି ପରିହାସୀ ନାରୀ,
ବରକୁ ବଲିଯାଉ କୁମାରୀ । ୧୭ ।

ଶୁଣିଣ ଅଳ୍ପ ହସିଲ ହୋଇ,
କଳ୍ପଲତା ତା ଶିର ନୁଆଁଇ ।
ସାନନ୍ଦେ କୁମର ମୁଖ ପ୍ରସନ୍ନ,
ଦିବସେ ଯେସନ୍ତେ କମଳ ବନ । ୧୮ ।
ପଞ୍ଚଗବ୍ୟି ଚଉରସ ପାନ,
ମୋଣୋହୁଂ ସାର ଅଞ୍ଜୋବନ ।
ମଦନମତ୍ତ ମାଳତି ମଧୁକର
ରହିଲେ ଚନ୍ଦ୍ରମାଳା ଭୁବନର । ୧୯ ।
ବାହାର କଣ ଜଗତ ପ୍ରାଙ୍ଗଣ,
ବିକଟେ କଲ ନୃହତ ଅଧଣ ।
ଯେ ନହୁଂ ଭୁଞ୍ଜି ବସୁ ଅଗ୍ୟାଂ ଦେଇ,
ମାଜଣା ହୁଅନ୍ତି ଭିତରେ ଯାଇ । ୨୦ ।
ସୁବର୍ଣ୍ଣ ଶତେ କୁମ୍ଭ ବାସ ପାଣି,
ଯେନଣ ଅନ୍ତଃପୁର କାମେଣ୍ଣ
ଶାଳଗନ୍ଧ ଅଗରନ୍ତ ଗୋଳ,
ଶ୍ରୀଅଙ୍ଗେ ଲେପନ କରନ୍ତି ବାଳୀ । ୨୧ ।
ବିବିଧ ମାଜଣା ସାର ବରବର,
ପୋଛିଲେ କ୍ଷୀନବାସେ ଠକୁର ।
ବାଞ୍ଛିଣି ବାସ୍ତେ କେଶ ଶୁଖାବନ୍ତି,
ଭୃଶରେ ଗନ୍ଧ ଲଗି କରାବନ୍ତି । ୨୨ ।
ଚଉପ ପାଟ୍ଟେଲ୍ହ ଲଗି ହୋଇଣ,
ମରକତ ଚକାଂଉ ଭୂଷଣ ।
ରତ୍ନ କଠାଉ ମଣ୍ଡ ବଢେ କରି,
ମଣିମା ବୋଲ ଡ଼ାକନ୍ତି ଚତୁରୀ ନାରୀ । ୨୩ ।

ମୋଶୋହ୍ମଂ କୋଠାରେ ପବ କର ଅଛନ୍ତି,
ପାଢ଼ଣ ଶାଳପତ୍ର ବାଛନ୍ତି ।
ତହିଂର ଉପରେ ରତ୍ନ ପଇଲମ,
ଅପୂର୍ବ ସେ କର୍ଣ୍ଣାଟ କମ । ୨୯ ।
କନେକ ଚାଟିଅ ଦଣ ବେଢ଼ ବେଢ଼ି,
ନକଟ କର ଆସନ ପାଢ଼ ।
ପାଏଢ଼ା ପାଡ଼ନ୍ତି ରତ୍ନ ପୀଢ଼ାପ୍ରେ,
ତହିଂ ବଜପ୍ସୁ କରନ୍ତ ସ୍ୱପ୍ନେ । ୨୫ ।
ଶ୍ରୀପସ୍ତୁର ପଖାଳ ଆଞ୍ଚୋବନ,
ପାଦୁକ ଲଗି ହୋଇଲେ ବନ୍ଧନ ।
ବତ୍ୟ ଛତ୍ରରସେ ଭୋଜନ,
ମୋଶୋହ୍ମଂ ସାଇଲେ ବନ୍ଧନ । ୨୬ ।
ନୃପତ୍ତ ଆଞ୍ଚୋବନ କର ଗଲେ,
ଉଗରଠାରୁ ବାରତା ପାଇଲେ ।
ଦ୍ରଶନ କରନ୍ତ ସାମନ୍ତ ସକଳ,
ହେଉ କରନ୍ତ ଖୁଣ୍ଟିଆ ବଳ । ୨୭ ।
ନଜ ଅବକାଶେ ବଜେ ନରେନ୍ଦ୍ର,
ଉଦପ୍ରେ ହୋପ୍ରେ ପୂର୍ଣ୍ଣମୀ ଚନ୍ଦ୍ର ।
ମଦନମନ୍ତ୍ରୀ ମାଳଣ୍ଣ ମଧୁକର,
ଗଲେକ ବେନ ମନ୍ତ୍ରୀ ନବର । ୨୮ ।
ମଣ୍ଡିଲେ ଚନ୍ଦ୍ରଶାଳାପୁର ନାଣ୍ଣ,
ମଧୁ ଶେପେଣ ସୁପାଣ୍ଡ ପାଢ଼ ।
ଭ୍ରମର କୁମାଶ ଦବ୍ୟ ବେଶ ହୋନ୍ତି,
ନାନା ତଡ଼ାଉ ଲଗି ସାରନ୍ତ । ୨୯ ।

ସୁପାତଳ ବିଚଳ ସୁରଶିଖର,
କଳପଲତା ଜନ୍ମ କଟର ।
ସଙ୍ଗଣ ଥିଲେ ଯେତେ ପଶବାଗ୍ଧ,
କବାଟ ପାଡ଼ଣ ଗଲେ ବାହୁଡ଼ି । ୭୦ ।
ଅଞ୍ଚଳ ଧରଣ କୁମରମଣି,
କୋଳରେ ଧର ବସାଇଲେ ଆଣି ।
ଆରମ୍ଭେ ଅଧର ମଧୁପାନ,
କୁମାରୀ ଲାଜେ ବୁଜିଲ ନୟନ । ୭୧ ।
ଆନନ୍ଦେ ସଦସ୍ତ ସଲଜ୍ଜ ମିଶି,
ଧଇର୍ଯ୍ୟ ଗୁଡ଼ିଲ ଖୁରୁ ସୁକେଶୀ ।
ପ୍ରସନ୍ନ ବଦନେ ହୋଇଥ୍ୟେ ହସ ହସ,
ଆପଣାର ଗୁପ୍ତେଂ ଫିଟିଲ ବାସ । ୭୨ ।
ସୁରଙ୍ଗ ଅଧର ସିତକାର କଛେ,
ସକଳ ଶଶ୍ୱର ପୁଲକେ ସ୍ୱଚ୍ଛେ ।
ଅର୍ଦ୍ଧ ଉଦସ୍ତ ସୀମନ୍ତି ଡୋଳା,
ରତିପତି ସମରେ ଲୀଳା ? ୭୩ ।
ଶବଧ ବକାର ସୁରତ ରଙ୍ଗ,
ବେଦ ଶଶ୍ୱର ହୋଇଥ୍ୟେ ଏକ ସଙ୍ଗ ।
କ୍ଷଣ କ୍ଷଣକେ ଆନୁଆନ ରସ,
ଜଗାଗରେ ହୋଇଥ୍ୟେ ରଜନୀ ଶେଷ । ୭୪ ।
ନେପୁର କଙ୍କଣ କର ଚରଣ ଦୋଳେ,
ମଙ୍ଗଳ ଶବଦ ଶୁଭଇ ବୋଲେ ।
ଅଧର୍ଯ୍ୟ ହୋଇଥ୍ୟେ ଦୁହିଁଙ୍କର ଡୋଳା,
ସମ୍ପୂର୍ଣ୍ଣ ଚଉଷଠୀ ରତି କଳା । ୭୫ ।

ବେନ ନଶ୍ୱାସ ଖରତର ବହେ,
ଶୃଙ୍ଗାର ରସେ ସେ ରସିଲେ ଦୁହେଁ ।
ମଦନ ନୃପତି ଉଚ୍ଛବ ବେଳେ,
କବେଶ ଫୁଲ ବନ୍ଧ ମୁକଳେ । ୭୬ ।
ଛୁଟିଲା ଅମୂଲ୍ୟ ମୁକୁତା ହାର,
କରଣ ଉରଜ ବନ୍ଦନ ଭାର ।
କୁସୁମ ଶ୍ରୀଅଙ୍ଗେ କଙ୍କଣ ରେଖ,
ଦେଖି ନୃପ ସ୍ମୃତ ହୋଇପ୍ତେ ଉଚ୍ଛୁକ । ୭୭ ।
ପିନ୍ଧଣ ବସିଲେ ସେ ଯାହାର ବାସ,
ଆକୁଳେ ସାରି ସୁରତି ରସ ।
ସ୍ଥିଣ କୁମର ମଣିଗଣ ହାର,
ମଣ୍ଡିଲେ କୁଚ କୁମ୍ଭ ଉପର । ୭୮ ।
ରଜନୀ ଶେଷେ ପରିବାରୀମାନେ,
ସୁପାତି ତୋଳନ୍ତି ଆସି ବହନେ ।
କୁମାର କୁମାରୀ ଘୁମୁରେ ନେଇ,
ସାଉଂଟି ମଣି ମୁକୁତା ଦେଇ । ୭୯ ।
କହଇ କଳାନିଧି ଶୁଣ ସନ୍ଧି,
ତିଳୋତ୍ତମା କାମେମା ସନ୍ଧି ।
ସାନନ୍ଦ କୁମ.ର କୁମାରୀ ବେନ,
ଶୁଭେଣ ପାହିଲା ରଜନୀ । ୮୦ ।
କୁମର ଅବକାଶ ହୋଇଣ,
ନିତ୍ୟକର୍ମମାନ ସାରିଣ ।
ଭିତରେ ମିଳେ ସେ ପଞ୍ଚବାଣୀ,
ମାଜଣା ସାରିଲେ କୁମାରୀ । ୮୧ ।
ଶୁଣହେ ମନ୍ମଥର ହୋଇ,
କେବେହେଁ କାହ୍ନାଂକ ନ ଯାଇ ।

ଦେଖସି କ୍ଷେତ୍ରବର ବାଟ କୋଣ,
ଶ୍ରୀଜଗନ୍ନାଥ ବୋଲିଣ ରାଜନ । ୪୨ ।
ସକଳ ସ୍ୱର୍ଗରେ ଈଶ୍ୱର ଯେତ୍ତୁ,
ଈଶ୍ୱରଙ୍କ ଚରନ୍ତି ସେତ୍ତୁ ।
ବିବିଧ ସମ୍ପଦେ ନୃପତିଗଣ,
କମଳା ପାଟ ମହାଦେଈ ଜାଣ । ୪୩ ।
ବିଜୟେ ନବରତ୍ନ ସିଂହାସନ,
ଦିବ୍ୟ ଦୁକୂଳ ପରିଧାନ ।
ଉତ୍ତରି ବାମେ ଚୂଳ ଶିର ନେତ,
ପାଟେ ହେମ ଦାଣ୍ଡି ଶୋଭିତ । ୪୪ ।
ଅଷ୍ଟବଙ୍କ ନୂପୁର କସ୍ତୁରୀ ବୋଳ,
ଚନ୍ଦ୍ରସମ ଅଙ୍ଗେ ସାମଳ ।
ଶ୍ରୀକାପଡ଼ା ଶିରେ ଫୁଲ ଚୂଳ,
କଣ୍ଠେଣ ଶୋହେ କୁସୁମ ମାଳ । ୪୫ ।
ବିସ୍ତାର ବଳଣ ବାହୁ ବେନି,
ମଣ୍ଡିଲେ କରପଲ୍ଲବ ବେନି ।
ବିଜୟେ ଜଗନ୍ନାଥ ବଳଭଦ୍ର,
ଜଗତଜନଙ୍କ ବଲ୍ଲଭ । ୪୬ ।
ଅଦ୍ଭୁତେ ପରିପୂର୍ଣ୍ଣ ଆନନ୍ଦ ଯେହ୍ନୁ,
ଉଦୟେ ଅସ୍ତ ନାହିଁ ଯେହ୍ନୁ ।
ପ୍ରମବ୍ରହ୍ମ ଦାରୁ କଳେବର,
ସେବନ୍ତି ନସ୍ତରିବା ପାଇଁ ନର । ୪୭ ।
କମଳନୟନ କରୁଣାସିନ୍ଧୁ ନୀଳଗିରି ଶିଖେ ବାସ,
ଶିରେ କର ବେନି ଯୋଡ଼ିଣ
ଭଣେ ହୋଏ ଅରଜୁନ ଦାସ । ୪୮ ।



# ଏକାଦଶ ଛାନ୍ଦ

ଦଶ-ରେଙ୍ଗି, ସପନଚେତଅ ବାଣୀରେ ଗାଇବ ।

ବଦ୍ଧର ଧନକ ସାର      ବେଳ କୁମର କୁମାର୍ଗୀ
ଯେମନଣ ଯେ ଯାହା   ପୁର ଭୁବନ ଗଲେ ।
ବିଚିତ୍ର ଜଗତ ଘର      ବିବିଧ କମ ଅପାର
ମଣିମୟେ କଟେ ସୁର ପୁର ମଣ୍ଡିଲେ ।
ଦିବ୍ୟ ଉପବନ ହିଂ ଅଟନ୍ତି
ରେଖ ରେଖ ପନ୍ତ୍ର ପନ୍ତ୍ର ସକଳ ଗଛେ ॥ ୧

ସୁରଶିଖର ନବର      ଭିତରେ ଯେ ସରୋବର
ନାନା କୁସୁମେଣ ବୃନ୍ତପନ୍ତ୍ର ଶୋଭନ୍ତି ।
ସୁବର୍ଣ୍ଣ ସ୍ଫଟିକ ପୀଢ଼ା   ବୃତ୍ତକୋଣେ ବୃତ୍ତମେଢ଼ା
ଛଡ଼ଙ୍ଗୁ ପକ୍ଷୀ ଜଳ କୂଳେ ରବନ୍ତି ।
ମଣ୍ଡିଣ ସେ କୁସୁମ ଝରା
କନକ କଳସେ ପାଠ ପଢନ୍ତି ଠେରା ॥ ୨

ହେମର ପାବନ୍ଧ ମାନ      କମନୀୟ ଭିନ୍ନ ଭିନ୍ନ
ଜଳଜ କୁସୁମେ ଅତି ସୁବାସ ପାଣି ।
ଠୋଣ୍ଠା ଅତି ପରିମଳ      ପାଚିଣ ବିବିଧ ଫଳ
ସ୍ୱସ୍ୱରେ ଶୁଭଇ ନାନା ପକ୍ଷୀଙ୍କ ବାଣୀ ।
ମଧୁଋତୁ ହୋଇଲା ଶେଷ
ଦାରୁଣ ନିଦାଘ କାଳ ହୋଇଲେ ପ୍ରବେଶ ॥ ୩

ଜଳଫଳତା କୁମ୍ମାଣ୍ଡ   ତପନ ସହ୍ନ ନପାର
ସଖୀଙ୍କ ସହିତ ତୋଟା ପୁରକୁ ଗଲେ ।
ପିନ୍ଧିବା ମୋଟ ଚନ୍ଦନ   କର୍ପୂର କସ୍ତୁରୀ ଘନ
ଫୁଲ ଆଳଟରେ ପରିବାସ ବାନ୍ଧିଲେ ।
ସଖୀଙ୍କ ସଙ୍ଗେତେଣ ମିଶି
ଶେଷ ସୀମନ୍ତିନୀ ବେନି କପଟେ ଆସି ॥ ୪
କୁମର ଯେ ଅବକାଶେ   ଖଟିଣ ସାମନ୍ତଂ ପାଶେ
ହସରସ କଉତୁକେ ଚେଡ଼ି ସାରିଲେ
ଆପଣେ ହୋଇ ସୁବେଶ   ନହୋଇଲେ ନଅବକାଶ
ସୋଧସାର ବେଗେ ନିମାଟିଆ ସାଜିଲେ
ଭିତରକୁ ବିଜେ କୁମର
ମୋହନ ମୂରତି କଂସ କୁସୁମ ଶର ॥ ୫
ଭିତରେ ନଦେଖି ଚାଲି   କୁମର ତୋଟାକୁ ଚଳି
ଦେଖିଲ ପଲଙ୍କେ ଶୋଇଅଛନ୍ତି ସୁକେଶୀ
ଚନ୍ଦନ ପନିର ପାଣି   କେତକୀ ଜଳ ବପଣୀ
ଥୋକେ ସଖୀଗଣ ଫୁଲ ଡୋଲନ୍ତି ବସି ।
ବିଜୟେ ସେ କୁମରମଣି
ଦେଖନ୍ତି ବିକାରେ ବେନି ନାଗ ତରୁଣୀ ॥ ୬
ସାତ୍ତ୍ୱିକେ କମ୍ପଇ ତନୁ   ସ୍ୱେଦ ଗଳଇ ନୟନୁ
ହୃଆ ଦମଦମ ଝିମିଝିମାଇଂ ଅଙ୍ଗ ।
ପୁଲକେ ସକଳ ଦେହୀ   ଜୀବନ ସନ୍ଦେହ ହୋଇ
ଭୋଗୀ ଭୋଗପତି ଅଙ୍ଗେ ବିଜେ ଅନଙ୍ଗ
ବିସ୍ମରନ୍ତି କସ କରିବା
ଜଳେଣ ପଶିଣ କୁମରକୁ ହରିବା ॥ ୭

କୁମର ପଲଙ୍କେ ବସି          କୁମାରୀ ଅଙ୍ଗ ଆଉଂଷି
ବୋଲନ୍ତି ତରୁଣୀ ମଣି ମୋ ବୋଲକର
ଅଳସ ଚନ୍ଦନ ବନ          ସେରଣ ଯହିଁ ମଦନ
ଦିବସ କାଳରେ ନିଦ୍ରା ନୋହୋଇ ପୁଣ
ଆସ ସଖି ତାପ ହରିବା
ସରୋବରେ ପଶି ଜଳକ୍ରୀଡ଼ା ସାରିବା ॥ ୮

ଉଠିଣ ରାଜା କୁମାରୀ          ବଲ୍ଲଭର ଭୁଜ ଧରି
ତୋଟା ପୋଖରୀ କୂଳେଣ ହୋଇଲେ ଉଭା,
ସଙ୍ଗେ ସବୁ ପରିବାରୀ          ଆଲଟ ଚାମର ଧରି
କୁମୁଦ* ବନେଣ ଯେସନେ ଆଦିତ୍ୟ ଶୋଭା ।
ରତି ସଙ୍ଗେ କାମ କି ଖେଳେ,
ସଖୀମାନେ ରଖି କରି ପଶିଲେ ଜଳେ । ୯ ।

ଗୁଞ୍ଜଣି କମଳ ବନ          ମଧୁପଗଣ ବନ୍ଦନ
ମତ୍ତ ମଧୁପାନେ ମତ ଗୁଞ୍ଜଣ ଭଲେ,
କୁମାରୀ-ମୁଖ-କମଳ          ମଧୁରସ ପରିମଳ
କଳପଲତା ବଦନ ବେଢ଼ି ଉଡ଼ିଲେ,
ନିବାରେ କୁରଙ୍ଗୀ ଲୋଚନୀ
କୁମର କୁସୁମଶରେ ଚତୁର କଥା (୧) ୧୦ ।

କରନ୍ତି ସେ ଜଳକେଳି          କୁମର ସଙ୍ଗେଣ ବାଳୀ
ବୁଡ଼ଯାନ୍ତେ ମୁକୁଳିତ କବରୀ ଶୋଭା ।
ବସ୍ତ୍ରାଚ୍ଛି ଆଳି ବଳ          ଚଞ୍ଚଳ ସକଳ କୁଳ
ଉଜଳ ଝଟକିଲ ସେ ବଦନ ଶୋଭା,

---

*'କମଳ'ପଦ ସଙ୍ଗତ ହେବ ।

ପରିମଳ ପଟନୀ ପିନ୍ଧ,

ପଟ୍ଟ ମଞ୍ଜୀରେଣ ଭିଡ଼ି ପଣତ ବାନ୍ଧ । ୧୧ ।

ଭୂଷଣ ଯାନ୍ତେ କୁମାରୀ          ମହିମା ଡାକନ୍ତି ନାରୀ

ଅଧର ଝଁଟକେ ଯେହ୍ନେ ବଜୁଳି କାନ୍ତି,

କୂଳରେ ଯେତେକ ଦାସୀ          ଅନଙ୍ଗେଣ ଅଙ୍ଗନାଣି

ଦେହକର୍ମି ସାରୂକ୍ୟରେ ବିକାର ହୋନ୍ତି ।

ଏସନକ ସମସ୍ତ ବେଳେ,

ଝପଟେ ନାଗ କୁମାରୀ ଖେଳନ୍ତି ଜଳେ । ୧୨ ।

ବୋଲଇ କଳପଲତା          ଶୁଣ ଗୋ ମଦନମତ୍ରି

ଅନଙ୍ଗ ମଞ୍ଜରୀ ମଧୁମତ୍ତ ଗୋ ସହି,

ବୁଡ଼ିବୁ କୁମର ମୂଷ୍ଟିଂ          କାହାକୁ କେହି ନ ଛୁଇଁ

ଯେ ଆଗ ଉଠିବ ସାକ୍ଷୀ ହୋଇବୁ ତୁହି ।

ବୋଲନ୍ତି ସେ ନାଗ କୁମାରୀ

ମଦନମତ୍ରି ସଖୀ ସେ ସାକ୍ଷୀ ତୁମ୍ଭର । ୧୩ ।

ଆମ୍ଭେ ଗୋ ବୁଡ଼ିବୁ ସାଙ୍ଗେ          କୁମର ଉଠିବ ଆଗେ

ତେବେ ସେଠି ଆଗୋ ସଖୀ ଜିଣିମ ତୁମ୍ଭେ ।

କାନ୍ତ ତୋର କରୁ ସତ୍ୟ          ଏକ ପତ୍ନୀର ବରତ

ସେତେକ ସେବକ ପଣ କରିବୁ ଆମ୍ଭେ,

ହସି କହେଂ କମଳମୁଖୀ,

ଦେଖି ଆମ୍ଭ ସଙ୍ଗେ ତୁମ୍ଭେ ବୁଡ଼ ଗୋ ସଖୀ । ୧୪ ।

ହୋଡ଼େ କୁମର କୁମାରୀ          ଜଳରେ ବୁଡ଼ିଲେ ସ୍ୱର,

ହରଣ ନାଗ କୁମାରୀ କୁମର ନେଲେ,

ବିତାନ ଦ୍ୱିରେକ ମଣ୍ଡି          ରତ୍ନ ସେ ପଲଙ୍କ ପାଡ଼ି

ଅମର ଶିଖର ମୂଳୁ କରି ଥୋଇଲେ ।

ସେହ୍ନ ଶଶୀମୁଖୀ ଯେ ଧନ
ଜଳରୁ ଉଠିଲେ ସେହ୍ନ କୁମାରୀ ବେନି । ୧୫ ।
ମଦନମଞ୍ଜୁକୁ ଦେଖି    ବୋଲଇ ସେ ଚାର ସଖୀ
ମୁହ୍ନିଂ ଦୁଃଖୀ କମ୍ପାଇଂ ଗୋ କଲ୍ପଇଂ ସତ୍ୟ,
ସେ ପଟେ ଜଣିଲେ ଜନ୍ତୁ    ଦାସୀ କର ମୋତେ କଣୁ
ହୃଦୟୁ କମ୍ପଇ ମୋର ଭୂମ୍ନ ସପତ,
ପୁଣି ଜଳେ ବୁଡ଼ିଲେ ବାଳୀ,
କୁମରକୁ ପୋଖରୀରେ ଲୋଡ଼େ ଅଣ୍ଡାଳ । ୧୬ ।
ବୁଡ଼ିଲେ ମୋ ପ୍ରାଣ ମଣି    ଯେହ୍ନ ପଦ୍ମମୁଣ୍ଡା ଚେଣି (?)
ଛଳେରେ କି ଯାଇ ସେହ୍ନ ଲୁଚିଣଛନ୍ତି ।
ଧନ୍ଦୁଛି ତୁମ୍ଭର ଗୋଡ଼    ଯୋଡ଼ୁ ଯୋଡ଼ୁ ମୋର ହୋଡ଼
ସମସ୍ତେ ହୋଇଣ ବୁଡ଼ିଲେଣି ଯେ ଘାନ୍ତ ।
ପରିଜନ ଜାଣଇଂ ମୁହ୍ନିଂ,
ନୋହିଲେ ଗଣ୍ଡକୁ ପଡ଼ୁଅଛୁଟି ଡେଇଂ । ୧୭ ।
କୁମାରୀ ବଚନ ଶୁଣି    ଝାସି ପଡ଼ିଲେ ତରୁଣୀ,
ଜଳ ଭିତରେଣ ବୁଡ଼ି କୁମର ଲୋଡ଼ି,
ନ ପାଇ କୁମରମଣି    କୂଳେ ଉଠିଲେ ତରୁଣୀ,
ଦେଖିଣ କଳପଲତା ସାହସ ଉଡ଼ି ।
ମୋହ ଯାଇ ପଡ଼ିଲା ବାଳୀ,
ଦେଖିଣ ମଦନମଞ୍ଜୁ ଧଇଲା ତୋଳ । ୧୮ ।
କ୍ଷଣେ ଥିଲା ମୋହ ଯାଇ    ଚେତଣ ସଖୀଙ୍କ ଗୁହ୍ନିଂ,
ବୋଲଇ ତରୁଣୀମଣି କୁମର କାହିଂ ।
କାନ୍ଦଣ କହନ୍ତି ଦାସୀ    କୁମର ପାଣିରେ ପଶି,
ବୁଡ଼ିଣ ତ ଆଉ ବେଳେ ଉଠିଲେ ନାହିଁ ।

ଶୁଣିଣ ବେଦନ କୁମାରୀ
କୁମରର ଅନୁରାଗ ଗୁଣ ସୁମରି । ୨୯ ।
ହେ ସ୍ୱାମୀ ପୁରୁଷବର          କାମର କୁସୁମ ଶର
କେଉଁ ଅପରାଧ କଲି ଚେଜିଲୁ ମୋତେ ।
ନନ୍ଦନ ବନେ ଖେଳିବା          ବୁଲି ଫୁଲନ୍ତ ତୋଳିବା
ଲୁଚିଣ ଯେ ଅପରାଧ କରିଛୁ ତୋତେ ।
ତାହା ଧରି କଲିକ ରୋଷ,
ମହନ୍ତ ଯେ ଜନ ସେହୁ ନ ଧରେ ଦୋଷ । ୨୦ ।
ଦେଖି ଦେଖି ମୁଖ ମୋର          ଲୋଚନ ଅତି ଗମ୍ଭୀର
ପ୍ରେମେକ ବିଚ୍ଛେଦ ଦୁଃଖ ସହୁ ନପାରୁ ।
ଗଳାରୁ କାଢ଼ିଣ ହାର          ନ ଥୋଇ ଉର ମଧ୍ୟର
ହୃଦରେ ଲମ୍ବାଇ ପଦ୍ମଧାନ ଯେ କରୁ ।
ଅଧର ମୁଂ ପାନ ଯେ କଲି,
କପୋଳେ ରଚନା କେତେ ପ୍ରୋଛିଲୁ ତୋଳି । ୨୧ ।
ଚୁମ୍ବନ ଦେବାକୁ ଲୋଡ଼ି          ଦୁଇ ଓଷ୍ଠ ଗୋଜ କରି
ବଦନକୁ ଗୃହୁଂ ଦେଇ ନପାରି ରହୁ ।
ପୁଲକ କରଇ ଅଙ୍ଗ          ବିକାର ହୋଇ ଅନଙ୍ଗ
ଛଦ୍ମ ହୋଇଣ କ କ ଚେନ କହୁ ।
ଆଉ କାହୁଂ ପାଇବି ବନ୍ଧୁ,
ଦୁଷ୍ଟାସ୍ତ୍ର ମଦନ ତୋର ବଦନ ଇନ୍ଦୁ । ୨୨ ।
ମିଛେ ହେଂ କରିଣ ମାନ          କରିଣ ରଙ୍ଗ ଲୋଚନ
ଅବନୀ ନରେଖି ବସି ଥାଇ ଯେ ମୁହିଂ ।
ସଖୀ ତୋ କହନ୍ତ ଆଗ          କୁମାରୀ ନବଢ଼ ରାଗ
ଶୁଣିଣ ନୟନ କରି ନୟନ ଛୁଇଂ ।

ଭୟେ ମୋର କମ୍ପେ ଚରଣ,
ତାହା ସୁମରିଲେ ନକ ଥିବ ୟେ ପ୍ରାଣ । ୨୩ ।
ମଦନ ମନ୍ତ୍ରୀର ଆଗ          ଧନେ ତୋ'ର ଅନୁରାଗ
ଏକାନ୍ତ ହୋଇଣ ତାଙ୍କୁ କହଇ ବସି ।
ତୁ ତାହା କେମନ୍ତେ ଜାଣି          ଚଛ ଆଡ଼େ ଲୁଚି ଶୁଣି
ଆଖି ଦୁଇ ବୁଜି ଆସ୍ତେ ଭିଡ଼ିଲୁ ହସି ।
ଲଜେ ମୁହଁ ନ ଚାହିଁ ତୋରେ,
ଆଲିଙ୍ଗନ କରି ଭୁଜେ ବାନ୍ଧିଲୁ ମୋତେ । ୨୪ ।
ଯାଅ ଗୋ ମଦନମନ୍ତ୍ରୀ          ଜଣାଅ ମୋହୋର ପିତା
ଚିତା ଆରୋପଣ ବେଗେ କରନ୍ତୁ ମୋତେ ।
କାନ୍ତ ମୋ ଛାଡ଼ିଲେ ଆଶ          ଅନଳେ ମୁଁ ଦେବି ଝାସ
କରିବି ତନୁ ବିନାଶ ବଧିଲା ତୋତେ ।
ପ୍ରାଣନାଥ ଭେଟିବି କାହିଁ
ବିଧବା ବେଦନା ସଖି ନ ପାରେ ସହି । ୨୫ ।
ଶୁଣିଣ ସଖି ଆକୁଳ          କରନ୍ତି ରୋଦନ ଗୋଳ
ଯେସନେ ସିନ୍ଧୁ ଉଛୁଳେ ପ୍ରଳୟ କାଳେ ।
ଧାଇଁ ବେଗେ ଦାସୀମାନେ          ଜଣାନ୍ତି ଯାଇ ରାଜନେ
ଶୁଣିଣ ଚକିତ ମନ ହୋନ୍ତି ଭୂପାଳ ।
ଚେଲରେ କି ମଷ୍ଟି ପଡ଼ିଲା,
ଅମର ଶିଖର ଜଳେ କେନ୍ତୁ ବୁଡ଼ିଲା । ୨୬ ।
ବୋଲନ୍ତି ସେ ମହାରାଜ          କନ୍ୟା ହୁଅ ବଜ ବଜ
ଥୟେ ଧରି କୁହ କଥା କୁମର କାହିଁ ।
ପାତ୍ର ଅମାତ୍ୟ ଜନ          ସବୁରି ଚକିତ ମନ
ତବଦ ହୋଇଣ ରହିଁ ଅଛନ୍ତି ରହି ।

କର ଯୋଡ଼ି ଦାସୀ ଜଣାଇଂ
ସାବଧାନ ହୋଇ ତୁମ୍ଭେ ଶୁଣ ଗୋସାଇଂ । ୨୭ ।
ବୋଲନ୍ତ ସେ ପଞ୍ଚବାଣ    ଉତ୍ତର ପୁର ପୋଖରୀ
ଜଳକ୍ରୀଡ଼ା କେଳି କଲେ ଆଜର ଦିଣି ।
ଆପଣେ ସେ ମହୀପତି    ସଙ୍ଗେ ସବୁ ପାତ୍ରମନ୍ତ୍ରୀ
ବିହାର କରନ୍ତି ମେଳୁ ସମସ୍ତେ ବସି ।
ବଜେ ଧର୍ମଧ୍ୱଜ ନରେନ୍ଦ୍ର,
ବେଢ଼ା ଜାଲ ନଦନ ସଙ୍ଗେ ସାମନ୍ତ ବୃନ୍ଦ । ୨୮ ।
ଦେଖିଣ କୁମାରୀ ଦେନ    ମେଢ଼କୁ ଗଲେ ସଜଣୀ
କଅବା କାଳ ହୋଇଲା ଆଜର ଦିଣି ।
ଆପଣେ ସେ ମହୀପତି    ସଙ୍ଗେ ସବୁ ପାତ୍ର ମନ୍ତ୍ରୀ
କୁମରକୁ ଢଲ୍ଢ଼ୁଛନ୍ତି ଜଳରେ ପଶି ।
ଅମର ଶେଖର ନ ଦେଖି,
କାରୁଣ୍ୟ କରନ୍ତି ସର୍ବେ ହୋଇଣ ଦୁଃଖୀ । ୮ ।
ଏଥନ ଶୁଣି କୁମର    ମାଳତୀ ଯେ ମଧୁକର
କପୋଳେ ମାରଇ କର ଧାମଇ ଦାଣ୍ଡେ ।
ଶୋକ ସମୁଦ୍ରରେ ବୁଡ଼ି    ଧାଉଂ ଧାଉଂ ପଡ଼େ ତୁଡ଼ି
ସାଉଙ୍କ ମରଣ କସେ ଶବର କାଣ୍ଡେ ।
କୁମର ନଦରେ ପଶିଲା,
ମିଛ ମିଛ ବୋଲ ପୋଖରୀରେ ଝାସିଲା । ୩୦ ।
ଆଶ୍ୟାଂ ଦେଲେ ନୃପବର    ବେଗେ ନ ବୁଡ଼ୁଣୁ ଧର
ଦୁଃଖଂକର ଯେବକ ଆତ୍ମା ମରବା ବଧି ।
କୁମାରୀ ମଦନମତ୍ତ    କୁମର ଯେ ଦୁଇ ଧାତା!
ଯେବେକାବେଳେ ନେଉଅଛ କର ଅବଧି ।

ଯେଁତେ ବୋଲି ରୋଦନ୍ତ ରାଏ,
ଅବନୀ ଭିତରେ ପଡ଼ି ମାରନ୍ତ ଠାଏ । ୭୧ ।
କୁମାରୀ ମାତାକୁ ଚାହିଁ    ବୋଲନ୍ତି ସେ ନୃପସାଇଁ
ରୋଦନ କଲେଣ ଆଉ କିସ ହୋଇବ ।
କପୋଳେ ଯାହା ଲିହିନ୍ତି    କେତେବେହେଁ ନୋହିବ ପୋଛି
ଯେତେବେଳେ ଯାହା ଲିହିଅଛି ଘଟିବ ।
ନପାଇଲୁ ଜଳେ ବୁଡ଼ିଲା,
କେଅବା କୁମରମଣି ହରଣ ନେଲା ।

ଦୁଷ୍ଟାସୁ ମଦନ ଯେହୁ    ଲୋଭ ନ କରିବ କେହୁ
କିଅବା ଜଳଦେବତା ନେଇଛି ହରି ।
ଆଠ ଦିନ ରହି ଦେଖ    ଲଭିବ ପରମ ସୁଖ
ଆଣିମା କୁମରମଣି ଉପାୟେ କରି ।
ଆଉ ସେଥେ ସନ୍ଦେହ ନାହିଁ,
ବୁଡ଼ିଲା କୁମର କେଣେ ଗଲା ଉଭାଇ । ୭୩ ।
ଆପଣେ ଉଠି ନୃପତି    ବିଜୟେ କୁମାରୀ କତି
କାରୁଣ୍ୟ ନ କର ଅତି ଶୁଣ ଗୋ ମାୟେ ।
ଖୋଜିବା ଉପାୟେ କରି    ଆଣିମା କୁମର ଲୋଡ଼ି
ଜୀବନ ରଖିଥି ଆଠ ଦିବସ ଯାଏ,
କୁମରକୁ ଅଛଇ ଆଶ,
ନୋହିଲେ ରଇ ସଜାଡ଼ି ଅନଳେ ପଶ । ୭୪ ।

କୁମାରୀ ପ୍ରବୋଧି ରାଏ    ନବରେ କଲେ ବିଜୟେ
ମ ଲକ୍ଷ୍ମୀ ମଧୁକରହିଁ ପୁରକୁ ଗଲା ।
ବଳଧର ଗୁଣ ଗୁଣି    କଳପଲତା ତରୁଣୀ
ଆଠଦିନ ଯାଏ କୁଶ ଶେଯେ ଶୋଇଲା ।

ମନେ କର ଭ୍ରମର କୋଳ,
କୁରଙ୍ଗୀ ନୟନୁ ପୂକା ବହଇ ଜଳ । ୩୫ ।
ବୈଶାଖ ଶୁକଳ ତିଥି ତୃତୀୟା ବୋଲି ବଖ୍ୟାତି
ମଳଗିରି ନୃପବର ଦେବନ୍ତି ଘେନି ।
ସକଳ ସନାନ୍ତ ? ଶିବ ମିଳି ଚନ୍ଦନ ଉତ୍ସବ
ଆପଣେ ଅଛନ୍ତି ସଂଗେ ଜଳକ୍ରୀଡ଼ାସନି ।
ସାତଘଡ଼ି ହୋଇଲା ବେଳ,
ଚନ୍ଦନ ଗୋଳନ୍ତି ମନ୍ଦାକିନୀର ଜଳ । ୩୬ ।
କପୂର ଗନ୍ଧ କସ୍ତୁରୀ ଅଗରୁ ପନ୍ନର ଭରି
ସୁବର୍ଣ୍ଣ ଖୁରିପେ ଲଇ ତନେଠାବେଣ ।
ସିଂହାସନ ତଳେ ନେଇ ମୃଦ୍ଧରଥ ହାଥେ ଦେଇ
ଶ୍ରୀଜଗନ୍ନାଥଙ୍କୁ ନାଗି କଲେ ବେଗେଣ ।
ବାଜନ୍ତିକ ଯାହା ମନ୍ତ୍ରସ୍ୱ,
ଶିରେ କର ଦେଇ ଦେବ ସ୍ତୁତି ପୂଜାର । ୩୭ ।
ରାମ ସୁଭଦ୍ରା ମୁରାରି ପ୍ରେକ ଦେହ ଭିନ୍ନ କରି
ତନ୍ନତ୍ରେଂ ଚନ୍ଦନ ଲାଗି ହୋଇଲେ ଝାଉ ।
ଶୁକଳ ସବୁ ବସନ ଶ୍ରୀଅଙ୍ଗେ ବୋଳି ଚନ୍ଦନ
ପାଳଣ ପଣ୍ଡୁପାଳେ ଚନ୍ଦନ ପୋଛନ୍ତି ।
ମନ୍ତ୍ରିଆଳ ଲାଗି ଯେ କଣ,
ପୁଣି ଲାଗି କରାଇଲେ ସରୁ ସିନ୍ଦୂର । ୩୮ ।
କାଠ ଘୋଡ଼ା ପ୍ରେକ ଚଢ଼ି ନିମୁଣ୍ଡି କାପଡ଼ା ଫେଡ଼
ରଙ୍ଗ ଫୁଲମାଳ କାଢ଼ି ପଣ୍ଡୁପାଳକ ।
ପୁଣିହିଂ ଶିର କାପଡ଼ା ସେବତୀ ଫୁଲ ପାଖୁଡ଼ା
ଶିରରେଣ ପାଡ଼ଲେ ଅପୂର୍ବ କୁଳେକ (?) ।

ବାଜଲାକ ଭେରୀ କାହାଳୀ,
ହୃଦରେ ଲମ୍ବଇ ରତ୍ନ ମୁକୁତା ମାଳୀ । ୩୯ ।
ପୁଣି ଶଙ୍ଖ ଚକ୍ରଧର ମଣ୍ଡିଲେ ଶ୍ରୀଭୁଜ ଉର
ଝିମୁଣି ଠାବରୁ ଶୀରପଦ୍ମର ଯାଏ ।
ଫୁଲର କର ପଲ୍ଲବ ଦେଖି କେ ଦେହ ଧରିବ
ଫୁଲର ମକୁଟ ଫୁଲ କର୍ଣ୍ଣୀଠ ଶୋଭେ ।
ସ୍ୱୟଂ ପରଂବ୍ରହ୍ମ ବିଜୟେ,
ସୁରନର ମୁନିମାନେ କରନ୍ତି ବିନୟେ । ୪୦ ।
ବେହେରା ଖୁଣ୍ଟିଆ ବଇ ବୋଲନ୍ତି କମଳାପାଇଁ
ବୀରଛତ୍ର ଧରିଇଣ ବାହାର ହୁଅ ।
ସକଳ ଦେବଙ୍କୁ ଘେନି ସଂଗେଣି ସୁର କାମେଣୀ
ସକଳ ସମ୍ଭାରେ ଯାଇ ଯାତ୍ରା କରିଅ ।
ବାଜିଲାକ ଯାତ୍ରା ମହୁରି,
ଜଗନ୍ନାଥ ଆଜ୍ଞାଂ ମାନ ହୃଦରେ ଧରି । ୪୧ ।
ମଣ୍ଡିଲେ ଉତ୍ତ ବିମାନ ବିଜୟେ ଜଗମୋହନ
ଆଗେ ଅପସରୀମାନେ କରନ୍ତି ନୃତ୍ୟ ।
ସରୋବର କୂଳେ ବଜେ ଢମକ ନିଶାଣ ବାଜେ
ରୂପ ଆସି ଉଭାଇ ଯେ କଲ୍ପ ଭୂରିଛ ।
ଜଳକେଳି କରନ୍ତି ନାବେ,
ଅରଜୁନ ବେଢୁଆଳ ଧରଇ ଭାବେ । ୪୨ ।



## ଦ୍ୱାଦଶ ଛାନ୍ଦ

ପିଅର ଜନମ ନିଜ ମନ୍ଦରେ ମିଳିଲେ, ଏ ବାଣୀରେ ଗାଇବ

କହଇ କଳାନିଧି କାମିନୀ ଶୁଣ ତିଳୋତ୍ତମା ନାରୀ ,
କଳପଲତାର ଆକୁଳ ଦେଖି ମଉନ ହେଲେ ଶୁଆଶାରୀ । ୧ ।
ଛାଡ଼ିଲେ ସ୍ୱରରେ କୋକିଳକୁଳ ମଧୁକରେ ନ ଚୁମ୍ବନ୍ତି ଫୁଲ,
ବଢ଼ିଲା କାମ ଶୋକ ନଦୀ ନ ଦିଶଇ କୂଳ । ୨ ।
କୁଚ କୁମ୍ଭ ଉପରୁ ଅଞ୍ଚଳ କାଢ଼ି ଦେଖଇ ପ୍ରାଣନାଥର ଚିହ୍ନ,
ସୁରେଖ ନଖରେଖ ଦେଖିଣ ପୁଣ ପୁଣ ଦିଅଇ ଚୁମ୍ବନ । ୩ ।
କୁମର ନ ଦେଖି କଳପଲତା ଅତିରତେ କରେ ରୋଦନ,
ପାଣ୍ଡର ହୋଇଗଲା ବସିଲା କାଳିମା ଦିଶିଲା ବଦନ, । ୪ ।
ପରିରମ୍ଭ କରଇ ସୁମୁଖୀ ଶୂନ୍ୟେ ହସି ପୁଣି ଉଠଇ କାନ୍ଦି,
ପରିଜନ ଜାଣି କାମରିପୁ ବସ୍ତ୍ରେ ମନ୍ମଥ ବନ୍ଦୀ । ୫ ।
ଅବନୀ ଶୟନେ କଳପଲତା ଲୋତକ ବର୍ଜନ କରି,
କୁମର ବିଚ୍ଛେଦ ବେଦନା ବହୁ ଦିବା କୋଟି ଯୁଗ ସରି । ୬ ।
ବୋଲଇ କୁମାରୀ କଳପଲତା ଦମ୍ଭରେ ପଇଡ଼ ପିଇଲି,
କୁମର ବଦନ ଦେଖିବାକୁ ପୁନରୁ ··· ··· ··· । ୭ ।
କେ ମୋତେ ଦେଖାଇବ ପ୍ରାଣନାଥ ତାହାର ମୁଁ ହୋଇବି ଦାସୀ,
ହୃଦୟୁ ବିଦାରି ହୋଇଯେ ପ୍ରୀତି ଗୁଣନିଧି ସେବନେ ତୋଷି । ୮ ।
ମଦନମନ୍ତ୍ରର ଭକ୍ତ ଧରଣ ଧର୍ମଧ୍ୱଜ ରାଜା କୁମାରୀ,
ସଙ୍ଗେ ସଖୀ ଘେନିଣ ··· ··· ··· ··· ··· *ଯେ କରି । ୯ ।

---

* ଛିଡ଼ା ଯାଇଥିବା ଜାଗାରେ ଯେ ଏ ଅକ୍ଷର ନଷ୍ଟ ହୋଇ ଯାଇଛି ।

ଯେଉଁ ଲତାରେ ଯେଉଁ ଯେଉଁ ଦିନ ଯାହା ଯାହା କରିଛି କାନ୍ତ,
ନୟନରୁ ଲୋତକ ସିଂଚଣ କାନ୍ଦ ଦେଖାଇଣ ସଖୀନ୍ତ । ୧୦ ।
ଅନେକ ମାଧବୀ ଲତା ତଳେ ପଲ୍ଲବ ପଲଙ୍କ ପାଡ଼ି ... ...,
... ... ... ... ରତିସାରେ ମୋର ହୃଦେଣ ବୁଡ଼ି । ୧୧ ।
ମୁଂ ପୁଣି ମୋହୋର ତଡ଼ାଗମାନ କୁମର ଶ୍ରୀଅଙ୍ଗେ ଲାଇ,
ମୋହର ବସ୍ତ୍ର ପିନ୍ଧାଇଣ କୁସୁମେ କବରୀ ଖୋସଇ । ୧୨ ।
କରରେ କଙ୍କଣ ... ... ହେ ମଣିମେଖଳା କଟୀରେ ଖଞ୍ଜି,
ସୁଗନ୍ଧ କୁସୁମ ପରାଗ ଚନ୍ଦନ ସିନ୍ଦୂର ଟୀକା ଯେ ରଞ୍ଜି । ୧୩ ।
ଥୋକାଏ ବେଳ ଅପହୃଡ଼ ହୋଇ ପ୍ରାଣନାଥ ଉଠି ବସନ୍ତି,
କୁମର ... ... ... ... ସକଳ ସଖୀ ହସନ୍ତି । ୧୪ ।
ମୋହର ମୁଖକୁ ଅନାଇଣ ପଚାରନ୍ତି ସକଳ ସଖୀ,
ବୋଲଇ ମଦନମଞ୍ଜରୀ ସଖୀ ମୋହର ସ୍ୱେଦଜ ଦେଖି । ୧୫ ।
କୁମର ଦେଖି ମଧୁବଲ୍ଲରୀ ଶ୍ରୀମୁଖ ସଲଖି ଧଇଲା,
ଆପଣାର ଲଜେ ମୋତେ ଆଲିଙ୍ଗନ କଲା । ୧୬ ।
ଶୁଣିହଂ ସେହିମତ ହୋଇବାକୁ କାହିଂ ପାଇବି ପ୍ରାଣ ଈଶ୍ୱର,
ଆଠଦିନ ପାଇଲେଣ ଜଅଇଂ ନୋହିଂଲେ କରିବି ଦେଶାନ୍ତର ।୧୭
ସେଠାରୁ ବାହୁଡ଼ି ଆସନ୍ତେ ... ... ...ର ଅଛି,
ଡାଳର ସ୍ୱେକଡାଳ ଗୋଟିଏକ ସୁବର୍ଣ୍ଣକାଣ୍ଡ ଫୁଟିଛି । ୧୮ ।
ସ୍ୱେତେକ ଯାହା ମୋର ନ ସହଇ ଯେ ମୋତେ କାହିଂଅଛିଗୁଣ୍ଡ,
ଗୃହଂ ଗୃହଂ ଲୋଚନ ପିଟୁଡ଼ଇ ସେ ମୋ ... ... । ୧୯ ।
ବୋଲଇ ମଦନମଞ୍ଜରୀ ସଖି ଆକୁଳ ଗୋ ହୁଅ କିମ୍ପାଇଂ,
ଆଠଦିନ ଅନ୍ତରେ କୁମରକୁ ଦିନଏ ଗୋଡ଼ାଇବା ଯାଇଂ । ୨୦ ।
ଶୁଣିଣ ମଦନମଞ୍ଜରୀକୁ କଳପଲତା କୋଳ କରି,
ହୃଦୟୁ ଆକୁଳ କରି ... ... ... କ ବଚନ ବାହୁଡ଼ି । ୨୧ ।

ଦଶଦିଗ ଗୃହାଙ୍ଗଣ କନକଲତା ନଗରରେ କରଇ ରୋଦନ,
ସଂପୂର୍ଣ୍ଣ କଳାନିଧି ମୁଖ ଯେତକେ ବୁଡ଼ିଲା ବଦନ । ୨୨ ।
ସୁବେଶ ହୋଇ କନକଲତା ନୂପୁର ବଡ଼ଆ ଖାଇ,
ଖେଳଇ ସଖୀଙ୍କ ସଙ୍ଗତେଣ ଯେମନ୍ତେ ପାତଦ୍ଧନ ଯାଇ, । ୨୩ ।
ମଦନମନ୍ତ୍ରୀ କତିକ ରାଇ ବୋଲଇ ନୃପତି କୁମାରୀ,
ତୁମ୍ଭେ ବେଗ ଯାଅ ତୁମ୍ଭ ଉଆସକୁ ଦେଖିବ ବଳହ ତୁମ୍ଭର । ୨୪ ।
ମୋହର ବୋଇଲ ଗ୍ରାମୂରେ କହ ଅମରଶିଖର ନ ଦେଖି :
ଯେକଇ ଅମ୍ବା ଦୁଇ ଦିହ କେମନ୍ତେ ଅଛନ୍ତି ଦେହ ରଖି । ୨୫ ।
ମୋହର ପିତାଙ୍କୁ ଜଣାଇଣ ରଇ ମୋତେ ଖୋଲାଇ ଦିଅନ୍ତୁ,
ମୋର ସ୍ୱାମୀ କାର୍ଯ୍ୟ କରିବ ଯେତେକ ଶରଣ କରନ୍ତୁ । ୨୬ ।
କୁମାରୀ ଆଗ୍ୟାଂ ଶିରେ ଘେନିଣ ମଦନମନ୍ତ୍ରୀ ଚଳିଲ,
ମାଳତୀ ମଧୁକର ଗ୍ରାମୂରେଣ ସକଳକଥା ଜଣାଇଲା । ୨୭ ।
ଶୁଣିଣ ଅମର ଶିଖର ମିତ୍ର ନୃପତି ନଗରକୁ ଗଲା,
ରାଜାଙ୍କୁ ଦର୍ଶନ କରିଣ ଶିରେ କର ଦେଇ କହିଲା । ୨୮ ।
ଶୁଣ ସ୍ୱାମୀ ଅବନୀ ପୁରନ୍ଦର କଷ୍ଟ ଆସି ହୋଇଲା ଶେଷ,
ଚିତା ଆରୋହଣ କରିଇବ ହୋଇବ ଅଗ୍ନି ପ୍ରବେଶ । ୨୯ ।
ମାଳତୀ ମଧୁକର ବଚନ ଶୁଣି ମହୀପତି ମୋହ ଗଲେ,
ପାରୁଶ ସାମନ୍ତେ ଶ୍ରୀମୁଖେଣ ଶୀତଳ ଜଳ ସିଞ୍ଚିଲେ । ୩୦ ।
ସଚେତ ହୋଇଣ ମହାରାଜା ପାତ୍ରକୁ ଆଗ୍ୟାଂ ଦେଇ,
କୁମର ଉଆସ ପୋଖରୀ କୂଳେ ଚିତା ଆରୋହଣ କରାଅ ନେଇ । ୩୧
ଯେତେ ଆଗ୍ୟାଂ ଦେଇ ମହୀପତି ରୋଦନ କରଇ ଉଚ୍ଚସ୍ୱରେ,
ଶୁଣିଣ ରାଣୀ ମହାଦେଈମାନେ କାରୁଣ୍ୟ କରନ୍ତି ଅତି ଉଚ୍ଚସ୍ୱରେ ।
ଆଉରେ କୋଳାହଳ ଶୋକ କରୁ ଅଛନ୍ତି ରାଜ ସୀମନ୍ତିନୀ,
ଅଚେତ ହୋଇ ଅବନୀରେ ଶୋଇଛନ୍ତି କନକଲତା ଜନନୀ । ୩୨ ।

ରାଜାର ଆଗ୍ୟାଂ ପରମାଣେ ପାନ ପୁରୋହିତ ପାଣ୍ଡ,
କୁମାରୀ ନଗର ତୋଟା ପରେ ଶତା ଆବେଦନ କରାଇ । ୭୪ ।
ଦଦ୍ଧନ ସଞ୍ଚନ୍ତ ଥୋଅନ୍ତି କଳପଲତା ମଦନମନ୍ତ୍ର,
ଦୁଷ୍ଟ ସଖୀ ପ୍ରବେଶ ହୋଇଣ କରନ୍ତ ଦାନ ··· ଚନ୍ତ୍ର । ୭୫ ।
ମାଳତୀ ମଧୁକର ଭ୍ରମର ପ୍ରବେଶ ହୋଇଣ ଆସି,
ମିତର ସନ୍ତକ ଦେଖାଣ କଳପଲତାକୁ ବୋଲନ୍ତି ହସି । ୭୬ ।
ଶୁଣ ମାପ୍ରେ ରମଣୀ ଶିରୋମଣି ଗୁଡ଼ିକ ବଲ୍ଲଭ ସେବା,
ସ୍ୱେକଟର ? ହୋଇଅଛନ୍ତି ମିତ ଗ୍ରଲ ବେଗ ଚନ୍ଦ୍ରାଂକ ପିବା । ୭
ଶୁଣିଣ କଳପଲତା ସୁନ୍ଦରୀ ଅଳପ ହସିଂଲ ହୋଇ,
ପାନ ଜନଙ୍କୁ ପ୍ରବୋଧିଲେ ଅନେକ ଧନରତ୍ନ ଦେଇ ।୭୮ ।
ନଗାଇଲେ ଅନଳ ହୁତାଶନ ଅଗରଚନ୍ଦନେ ଜାଳି,
ପଦ୍ମମଳ ଚନ୍ଦ୍ର କସ୍ତୁରୀ ଭର ଘିଅ ମହୁ ମାନନ୍ତ ଢ଼ାଳି । ୭୯ ।
କାନ୍ତର କାଣ୍ଡ କମାଣ ଯେନ ଶ୍ରୀକରେ ନୃମନ୍ତ କୁମାରୀ,
ଗୃମରେ ଗୃମରେ ଯେନ କରେ ବାଜନ୍ତି ଦୁଇଶ ନାରୀ । ୮୦ ।
ଶୁଣ ହେ ରସିକ ଜନମାନେ ଦକ୍ଷିଣ ଜଳଧି କୂଳେ,
କ୍ଷେତ୍ରବର ନୀଳଗିରି ନବରୁ ଗୁଣ୍ଡିଚ୍ଚାକୁ ବିଜୟ କଲେ । ୮୧ ।
ବଦ୍ଧ ଚଉଡ଼ାଙ୍କ ଲଗି ହୋଇ ବାଜେ ବାରବର ତୁରୀ,
ନନ୍ଦିଘୋଷ ରଥୁବରେ ଆରୋହଣ ଶ୍ରୀଭୁଜେ ଶଙ୍ଖ ଚକ୍ର ଧରି ।୮୨।
ସକଳଦେବ ପଛେ ପଟୁଆରୀ କୁସୁମ ବରଷେ ରଥୁବରେ,
ଶିବ କେଶବ ବେଦଙ୍କ ଗ୍ରନ୍ଥରେ କର ସେ ଯୋଡ଼ନ୍ତି ଶିରେ ।୮୩।
କମଳଣୀ ପ୍ରସନ୍ନ କରାଇଣ ସିଂହାସନେ ପୀତବାସ,
ଦେବତାଙ୍କ ପଛେ ପାପ୍ରେ ନଡ଼ ଶୋଇ ବାହୁଡ଼ଇ ଅରଜୁନଦାସ ।୮୪



# ତ୍ରୟୋଦଶ ଛାନ୍ଦ

ଦଶରଥ ଗ୍ୟେ୍ୱ ଘରେ ମିଳଲେ ଯେ୍ୱ ବାଣୀରେ ଗାଇବ ।

ପଚ୍ଚରଇ ତିଳୋତ୍ତମା କହେ କଳାନିଧି,
କଳପଲତାର ଅଗ୍ନି ପରବେଶ ବିଧି । ୧ ।
କହଇ ସେ କଳାନିଧି ଶୁଣସି ଗୋ ସଖି,
ସକଳ କରନ୍ତି ଶୋକ ତିନଜଣ ଦେଖି । ୨ ।
ମାଳତୀ ମଧୁକର ସେ ସରୋବରେ ପଶି,
ଶ୍ରାଦ୍ଧାନ କରଣ ଚୂତ ତରୁତଳେ ବସି । ୩ ।
ଦେହ ପୋଛାଇଣ ଦିବ୍ୟ ଦୁକୂଳେକ ପିନ୍ଧି,
ଚିକଣ ଶୁଖାଇଣ ଦିବ୍ୟ ଗନ୍ଧପେଟିକ ବାନ୍ଧି । ୪ ।
କର୍ପୂର କସ୍ତୁରୀ ଗନ୍ଧ ଚନ୍ଦସମ ଗୋଳି,
ମାଳତୀ ମଧୁକରର ଅଙ୍ଗେଣ ସାମଳି । ୫ ।
ଲବଣୀ ଲଗାଇ ଉଆ ଗୁଜଳ ସାମଳି,
ପ୍ରଜ୍ୱଳିତ ହୋଇ ତନ୍ୱଂ ଅନଳନ୍ୱଂ ଜଳି । ୬ ।
ମଣିମୟ କଙ୍କଣ ବାହୁଟି ବଦମୁଦି,
କୁଣ୍ଡଳ କଟିମେଖଳା ଦନକର ଭେଦି । ୭ ।
ପାହୁଡ଼ ତଡ଼ାଉ ପାଦେ ନେପୁର ବିରାଜ,
ଅନଳ ଭୁବନେ ସେ ଯେ ମନ୍ମଥ ସାଜ । ୮ ।
ମୁକୁତା ଅଞ୍ଚଳ ନୂଆ ନେତର ପାଟଛୋଡ଼ି,
ତନ୍ୱଂ ଉପରେ ସୁନା ଚୂଡ଼ି ଆଦି ଭିଡ଼ି । ୯ ।

ସୁବେଶ ହୋଇଣ ସେବକଙ୍କୁ ସ୍ବହଂ ହସିଂ,
ପାନ ସ୍ରଂକଣ ଚଉସ୍···ଭରେ ପଶି । ୧୦ ।
ସେଥୁ ଅନନ୍ତରେ ରାଣୀ ମାହାଦେଈ ଆସି,
ମେଳକ କଢ଼ାଇ କୁମାରୀ ନଗରରେ ପଶି । ୧୧ ।
ତୋଟା ପୁରଠାରେ ଦୁଇ ରଇ ଅଛୁ ଜଳ,
ଦେଖିଣ ଶୋକ କରନ୍ତି ଅନ୍ତଃପୁର ବାଳୀ । ୧୨ ।
କଳପଲତା କଡଙ୍କ ସ୍ତ୍ରୀଗଣେ ଯାଇ,
ବେଦନ କରନ୍ତି ଦୁଇସଖୀ ମୁଖ ଚାହିଁ । ୧୩ ।
ବୋଲନ୍ତି ବିଧାତା ବଡ଼ ଦାରୁଣ ଗୋ ଜାଣ,
ସେକାବେଳେ ନେଉଅଛୁ ଦୁହିଙ୍କର ପ୍ରାଣ । ୧୪ ।
ଲଗାଅ ଅନଳ ପୁରେ ପଶିବା ଭିତରେ,
ସବୁଙ୍କର ପ୍ରାଣ ଦେବା କୁମର ଉପରେ । ୧୫ ।
କଳପଲତା କୁମାରୀ ଅଗ୍ନି ରେଣ ଭରି,
କେଅବା କେମନ୍ତ ହୋଇଥିବ ଦେହ ଧରି । ୧୬ ।
ଧର୍ମଧ୍ୱଜ ମହାପତ୍ର ସେହ୍ନକ୍ଷଣି ବିଜେ,
କଟକଯାକ କାରୁଣ୍ୟ ମହାଗୋଳ ବାଜେ । ୧୭ ।
କୁମାରୀ ଜନନୀ କାନ୍ଦେ ଅବନୀରେ ପଡ଼ି,
ନଷ୍ଟେଷ୍ଟ ହୋଇଣ ରାସ୍ପେ ମୋହ ଯାଇ ପଡ଼ି । ୧୮ ।
ପ୍ରତାପ ପଞ୍ଚାଣ ବୋଲି କୁମାରୀର ଭାଇ,
ବୋବାଳ ପାଡ଼ଇ ବାଟେ ବାଇ ପରି ହୋଇ । ୧୯ ।
କୁମାରତ ବ୍ରହ୍ମ ବୋଲେ ମୋତେ ନିଅ ସାଙ୍ଗେ,
ଗାଡେହେଂ ବଞ୍ଚିବା ଦିନ କଉତୁକ ରଙ୍ଗେ । ୨୦ ।
ନୋହିଲେଣ ମୋହର ସେ ହତ୍ୟା ତୁମ୍ଭ ତହିଂ,
ସେତେ ବୋଲି ଚୋଖଣ୍ଡରେ ପଡ଼ିଲେକ ଡେଇଂ । ୨୧ ।

ପଦ୍ମଂର ଜାଣିକ ଲେକ ପାଣିରେ ପଶିଲେ,
କୁମର ନ ବୁଡ଼ୁ ଆଗ ଜଳରେ ବୁଡ଼ିଲେ । ୨୨ ।
ଧରେଣ କୁମର କୂଳେ ବସାଇଲେ ଆଣି,
ବୁଲଇ ବାହାର କଲେ ପିଇଥିବା ପାଣି । ୨୩ ।
ଥିରକରି କୁମରକୁ କଗତକ ନେଇ,
ସକଳ ସେବକମାନେ ଜଗିଣ ସେ ଥାଇ । ୨୪ ।
ଏଥୁ ଅନନ୍ତରେ ଶୁଣ ଅପୁରୁବ ରସ;
ରସିକ ସୋଦର ବୋଲେ ଅରଜୁନ ଦାସ । ୨୫ ।
କୁମାରୀ ଛାମୁରେ ଧୀନ ପରି କରଯୋଡ଼ି,
ବୋଲଇ ମଧୁବଲ୍ଲରୀ ଅମରମଞ୍ଜରୀ । ୨୬ ।
ଅନଳ ଜଳିଲ ଅତି କୁତୁହଳ ହୋଇ,
ମାଜଣା ବଢ଼ାଇ ଯଥାଧାତ ଦାନ ଦେଇ । ୨୭ ।
ଶ୍ରାହାନ କରିବାଲାଗି ପୋଖରୀରେ ପସ,
ଶ୍ରୀଅଙ୍ଗ ପୋଛିଣ ଦୁଇ ସଖୀ ହୁଅ ବେଶ । ୨୮ ।
ଶୁଣିକରି ଦୁଇ ସଖୀ ହସ ହସ ହୋଇ,
ଫେଡିଲେ କବରୀ ସରୋବର କୂଳେ ଯାଇ । ୨୯ ।
ଅମରମଞ୍ଜରୀ ମଧୁବଲ୍ଲରୀ ଯେ ଦୁଇ,
କୁମାରୀର ଆଗେ ହୋଇ ପଦ୍ମଣ୍ଡ ମଣାଇଂ । ୩୦ ।
ଦୁଇ ସଖୀ ଯାଇ ଜଳଭିତରେଣ ପଶି,
କୂଳ ଲେକମାନେ ଦେଖି ଲୋଚକ ବରଷି । ୩୧ ।
ଆପଣେ ମଦନମଣ୍ଡ ଆସି ଭଗ୍ନ ହୋଇ,
ବେଣୀ ପାରୁଷରେ ତେଷ ସୀମନ୍ତିନୀ ଦୁଇ । ୩୨ ।
ମଝିରେ କଳପଲତା ମୁକତ କବେରୀ,
ଚନ୍ଦ୍ର ଭଇଂ ଆସଇ କି ରଜନୀ ବଦାରି । ୩୩ ।

ହସ ହସ ହୋଇଣ ବୁଡ଼ଲେ ଚତୁର ସଖୀ,
ଆପଣେ ଉଠି କୁମର ପୋଛନ୍ତେ ଦୁଇ ଅଖି । ୩୪ ।
ବୋଲଇ କୁମରମଣି ଶୁଣରେ କୁମାରୀ,
କେ ସହିପାରିବ ଜଳେ ବୁଡ଼ିବା ତୁମ୍ଭର । ୩୫ ।
ହାରିଲଇଂ ହୋଡ଼ ସଖୀ ଛାଡ଼ ସବୁ ରୋଷ,
ଅଧର ମଧୁର ପାନ ଦେଇ ମୋଟେ ଶୋଷ । ୩୬ ।
ସ୍ନାହାନ କରିଣ ଦୁଇ କୁମାରୀ ଉଠିଲେ,
ନାଗ ନାରୀ ଦୁଇ ଗୋଟି ନିଜପୁରେ ଗଲେ । ୩୭ ।
ପ୍ରଶଂସା କଲେକ ତହିଂ ବେଷ ସୀମନ୍ତିନୀ,
... ... ... ... ... ... ... ※ । ୩୮ ।
ଦେଖିଲେ କୁମରମଣି ଅଛୁ ଉଷ୍ମ ହୋଇ,
ଚାତକ ସନ୍ତୋଷ ଯେହ୍ନେ ଜଳଧର ଚାହିଂ । ୩୯ ।
ଚୁମ୍ବକ ପାଷାଣେ ଯେହ୍ନେ ଲୋହ ଲଗି ଜଡ଼େ,
କୁମର ଦେଖି କୁମାରୀ ଭୁଜେ ଭୁଜେ ଭିଡ଼େ । ୪୦ ।
ମାଲେନ୍ଦୀ ନୟନେ ପୂରେ ଆନନ୍ଦର ଜଳ,
ଦିନକର ପ୍ରକାଶେ କି ବିକଶେ କମଳ । ୪୧ ।
ପାଶୋରିଲା ଅଧରେ ଚୁମ୍ବନ ପାନ ଦେଇ,
ଚକିତ ହୋଇଲେ ତହିଂ କୁଳ ଲୋକେ ଚାହିଂ । ୪୨ ।
ମିତକୁ ଦେଖିଣ ସେ ମାଲତୀ ମଧୁକର,
ଅଧର କମ୍ପଇ ଗଦଗଦ ଫୁଟେ ସ୍ୱର । ୪୩ ।
ଲୋଚନୁ ବହଇ ତାର ଆନନ୍ଦର ବାରି,
ପୁଲକେ ସକଳ ତନୁ ଶିରେ କର ଯୋଡ଼ି । ୪୪ ।

---

※ ଛଡ଼ା ଯାଇଥିବା ଜାଗାରେ ପୋଥି ଅକ୍ଷର ନଷ୍ଟ ହୋଇ ଯାଇଛି ।

ଦେଖି ମଧୁକର ମିତ ଦଧିଚାଣ୍ଡ ଘେନ,
ଆନଦେଶ ନାଚିଉଠିଲା ନାଗ ମୂରୁଧୂନ୍ନ । ୪୫ ।

ଅମଙ୍ଗଳ ବେଶ ମୋର ନ ଦେଖ ତୁ ମିତ,
ଦୁହିଂକର ପୀରତି ଦୁହିଂକ ଅନ୍ତଅନ୍ତ । ୪୬ ।

ସୁନା ବେଣ୍ଟ ଗୋଟାଏକ ଧରି ନିଜ କରେ,
ଲୋକମାନ କଢ଼ାଇ ଦିଅନ୍ତି ଦୂରେ ଦୂରେ । ୪୭ ।

ଶୁଭିଲାକ ହୁଳହୁଳି ହରିବୋଲ ଧ୍ୱନି,
ଉଛୁଳି ପଡ଼ିଲା ଗୋଳ ସକଳ ମେଦିନୀ । ୪୮ ।

ମାହାଦେଈ ହାଥ ଧରି ନୃପତି କେଶରୀ,
ଉଛୁଟେକେଣି ପୋଛେଣି କୂଳେଣି ବଳେ କରି । ୪୯ ।

ଲଜେଣି କଳପଲଟା ଆଡ଼େ ହୋଇଗଲ,
କ୍ଷିତିରେ କର ଦେଇ ଯେବକା କୁମରେ ରହିଲ । ୫୦ ।

ଆପଟେଣି ସେ ମହାପତି ପାଣିରେଣି ପଶି,
କୁମରକୁ କୋଳ କରି କୂଳେ ଘେନ ଆସି । ୫୧ ।

ଶ୍ରୀଅଙ୍ଗ ପୋଛଇ ନୂଆ ନେତ ପାଗ ବାନ୍ଧି,
ପାଖୁଡ଼ା ସେବତୀ ଫୁଲ ଗଭାଏକ ବାନ୍ଧି । ୫୨ ।

... ... ... ... ... ଅଙ୍ଗେ କସ୍ତୁରୀ ତିଳେକ,
ଦେଖିଣ ବିକାର ମନ୍ମଥ ପୁରି ଲୋକ । ୫୩

ଆନନ୍ଦ ହୋଇଲେ ଅନ୍ତଃପୁର ସୀମନ୍ତିନୀ,
ସେହିକ୍ଷଣି ପାହିଲାକ ଅନ୍ଧାର ରଜନୀ । ୫୪ ।

ବିବିଧ ତଡାଜ ଲଗି ହୋଇ ବୀରମଣି,
କନକ ଲେଖନ ନେତ ପାଟ୍ଟୁଡ଼ଏ ଆଣି । ୫୫ ।

ବେଢ଼ାଇ କଟୀରେ କଟୀମେଖଳାଏ ଶୁଣ୍ଢି,
ସୁବେଶ ହୋଇଣ କୋଟି ମନ୍ମଥ ଗଞ୍ଜି । ୫୬ ।

ରନ୍ନ ପଲ୍ୟଙ୍କେଣ କୁମାରୀଙ୍କ ବସାଇଲେ,
କନେକ ଶ୍ରାଦ୍ଧାନ ରାଜା ଶ୍ରୀକରେଣ କଲେ । ୫୭ ।
ତନ ବାଣକନ୍ତ ରାଇ ଗାସ୍ତେ ଅଗାାଂ ଦେଲେ,
ହସ୍ତୀ ଘୋଡ଼ା ପାଇକନ୍ତ ଲଗି କରାଇଲେ । ୫୮ ।
ବାଜଲ ଶଙ୍ଖ ମହୁରୀ ନିଶାଣ ଝମକ,
ଶୁଣିଣ ଉସତ ଦୁଃଖ ନାଶ ନର ଲୋକ । ୫୯ ।
ହାତୀ ଲଗି ହୋଇ ବୀର ଅମରଶିଖରେ,
ପଛେଣ ତେଇଂ ବସିଲ ମିତ ମଧୁକରେ । ୬୦ ।
ଆପଣ ସେ ସେହିମତ ହାତୀ ଲଗି ହୋଇ,
ପଛ ପଛୁଆରେ ବୀର ଛଅନ୍ତ ଧରାଇ । ୬୧ ।
ବାହାର ହୋଇଣ ବୀର କରେ ଦଗ ବଜେ,
ଆପଣେ ସୁରଶିଖରେ ଚଢି ମଞ୍ଜଗଜେ । ୬୨ ।
ବୁଲଇ କଟକ ... ... ... ... ... ... ...,
...'ର ରେଣୁ ଘାସ୍ଥେଣ ଲୁଚିଲେ ମାରତଣ୍ଡ । ୬୩ ।
ନେତ ପାଟ ଉଲଲ ଯେ ପାଟଛନ୍ନ ଉଡ଼େ,
ହୁଳହୁଳ ପୁଷ୍ପବୃଷ୍ଟି ଗୃମରନ୍ତ ପଡ଼େ । ୬୪ ।
ଆପଣେ କନେକ × × ବୀରବର,
କଟକଯାକେଣ ହାଟ ବାଟ ହୋଇସ୍ଥେ ଜୁର । ୬୫ ।
ଯେ ଯାହାର ଯେତେ ଗଲ ଭଣ୍ଡାରଛୁ ଦେଲେ,
କୁମରକୁ ଛୀନବର ଭିତରକୁ ନେଲେ । ୬୬ ।
ରାଣୀମାହାଦେଈ ପାନ ନିଯୋଗୀ ସମସ୍ତ,
ଯେ ଯାହାର ଅନୁରୂପେ ଦେଲେକ ଅକ୍ଷତ ୬୭ ।
ନାଗୁଣୀ ଯେ କୁମରକୁ ହର ନେଇଥିଲେ,
କୁମାରୀ ବକଲ ଶୁଣି ଛାଡ଼ ଦେଇ ଗଲେ । ୬୮ ।

ମାଳତୀ ମଧୁକରଙ୍କୁ ସଙ୍ଗମନ୍ତ୍ର ଦେଲ,
ନିଜପୁରେ ଗଲେ ତାହାଂ କାନ୍ତ ଯେ କାମେମା । ୬୯ ।
ଶୁଣ ମନୁରାଜ୍ୟ ଭୃଙ୍ଗା କୈାଂସ୍ତ ପଞ୍ଚଶ୍ରମୀ,
ବାନ୍ଧବଗଣ ବଳରୋ ଶ୍ରାଦ୍ଧାଣ କର ସ୍ୱାମୀ । ୭୦ ।
ଚନ୍ଦନରେ ଜରଜର ଦେଖିଲ ଶ୍ରୀମୁଖ,
ଅରଜୁନ ଦାସ ଭକ୍ତେ ହର ଦୀନ ଦୁଃଖ । ୭୧ ।*



---

* ଶେଷ ଆଡ଼କୁ ଆଉ ଅଳ୍ପ କେତେକ ଧାଡ଼ି ଥିବାର ମନେ ହୁଏ । କାରଣ ପୋଥିରେ ପୂଷ୍ପିକା ନାହିଁ ।

# କଳ୍ପଲତାର ଟୀକା

## ପ୍ରଥମ ଛାନ୍ଦ

ଝମକା—ଦୋହଣା, ଝେଣ୍ଡୁରୀ; ନଗ୍ରୋଧ ବା ନ୍ୟଗ୍ରୋଧ-ବଟବୃକ୍ଷ, ଏଠାରେ ଜଗନ୍ନାଥ ମନ୍ଦିର ବେଢ଼ାରେ ଥିବା କଳ୍ପବଟକୁ ବୁଝାଉଛି । କୁଥର-ପଞ୍ଜ, କୋଷେଣି ବା କାଟଣୀ-ସୁନ୍ଦର ଷୁଦ୍ରବସ୍ତ୍ର ବିଶେଷ, ସିନ୍ଦୂରପାଗ- ସିନ୍ଦୂରବର୍ଣ୍ଣ ବଶିଷ୍ଟ ଲାଲ ପଗଡ଼ି, ଚନ୍ଦ୍ରଉଦଆ-ଚନ୍ଦ୍ରାତପ, ସୁରନଦୀ ବା ସ୍ୱର୍ଗନଦୀ-ଗଙ୍ଗା, ସମ୍ଭୂତି—ସମ୍ଭବ ବା ଜାତ ହୋଇ, ଅପେଯ୍-ଅପେସ, ବଲ୍ଲିଭ (ବଲ୍ଲଭ) ବା ସ୍ୱାମୀ, ଦେବାଙ୍ଗବାସ-ଉତ୍କୃଷ୍ଟ ଲୁଗା, ଲଇ-ପରିଧାନ କରିବା, ( ଅଙ୍ଗେ ଲଇ ଯେ ଅଭେଦ କବିତୋମାନ-ବିଚାର ରାମାୟଣ ) ପରିପାଇ-ଦୃଢ଼ରୂପେ, ଊଳଗମେଲାଇ-ନମସ୍କାର କରି, ଶାନ୍ତି-ଶୋଭା, କାନ୍ତି-ଦୀପ୍ତି, ପରିଖାନ୍ତ-ବରଷନ୍ତ ମହାଁଆଳି-ମହାବାଳୀ, ରାଣୀ; ଜଙ୍ଗମ—ଶିବପୂଜକ ସନ୍ନ୍ୟାସୀ, ଠେରାପାଡ଼ି-କାନାର ବାଡ଼ ପକାଇ, ପଟନି-ପରିଚ୍ଛଦବସ୍ତ୍ର [ଶ୍ରୀନା ପଟନ ଅଙ୍ଗେ ଶୋଭେ, କମଳଲୋଚନ ଚଉଷଠି] ଦାମଦାଉ-ଏକପ୍ରକାର ବସ୍ତ୍ର ।

## ଦ୍ୱିତୀୟ ଛାନ୍ଦ

‘ଆପଣେ ଓଡ଼ିଶାର ରାଜା ହୋଇଛୁ’, କବିଙ୍କ ସମୟକୁ ବିଶାଳ ଗଜପତି ସାମ୍ରାଜ୍ୟ ଓଡ଼ିଶା ନାମରେ ଅଭିହିତ ହୋଇଥିବା ସୂର୍ଯ୍ୟବଂଶୀ ଲେଖମାନଙ୍କରୁ ଜଣାଯାଏ; ଯଥା—

୧ । ଅମ୍ଭର **ଓଡ଼ିଶା ରାଜ୍ୟର** ଲେଣ କଡ଼ି ମୂଳ କର ନ୍ୟାଟ୍ୟ ଗ୍ଲାଉଲ, ଗ୍ଲାଉଲ, ଗ୍ଲାଉଲ ( କପିଳେଶ୍ବର ଦେବଙ୍କ ପୁରୀ ମନ୍ଦିର ଲେଖ )

୨ । ଶ୍ରେ ଜଗନ୍ନାଥ··· ···ଅମ୍ଭର **ଓଡ଼ିଶା ରାଜ୍ୟେ** କେତେ ରାଜା (କପିଳେଶ୍ବର ଦେବଙ୍କ ଲିଙ୍ଗରାଜ ମନ୍ଦିର ଲେଖ)

ବଇଠୀ—ପାହାଡ଼ର ତଳଭାଗ, ଧ୍ବନି-ଧ୍ବନି, ହରିବନ୍ତ-ହରାନ୍ତ ଟୀକାସାରିବା-ରାଜ୍ୟାଭିଷେକ କରିବା, ଉଆସ-ରାଜଆବାସ, ବା ରାଜଗୃହ, ପାଟବଂଶୀ-ଉଚ୍ଚକୁଳରେ ଜାତ, ଅକ୍ଷତ ଜଳ-ଦାନ ଦେଲ, (ଦାନ ସମୟରେ ଅକ୍ଷତ ପକାଯାଉଥିବାରୁ ଏପରି ପ୍ରୟୋଗ ହୋଇଛି) । ବାସବ-ଇନ୍ଦ୍ର, ପ୍ରଲମ୍ବ-ହାଷ୍ଟାଙ୍ଗ ପ୍ରଣିପାତ ।

## ତୃତୀୟ ଛାନ୍ଦ

ଅବଧୂତ—ଶୈବ ସଂପ୍ରଦାୟ ବିଶେଷ, ସନ୍ନ୍ୟାସୀ, ପିଅର-ପୀତା, ଅଇରିଜିରିଲେ-ଶେଜୁ ବୃକ୍ଷରେ ଲେୟ ସ୍ବରୂପ, ଶେଜୁହନ୍ତା ( ଓଡ଼ିଆ ଭାଷାରେ ଅଣ୍ଡେଲ୍ୟ, ବୈରିଲ୍ୟ ପଦଦ୍ୱୟ ଅରଲେ ଓ ବରେଲ ହୋଇଯାଇଛି ) ମୁଦପାଢ଼—ମୋହର ବା ମୁଦ୍ରା-ମାରି ବନ୍ଦ କରିବା, ଅବଧି-କଣ୍ଠ, ଶେତ-ଶେଥ, ଝରି-ଜଳପାତ୍ର ବିଶେଷ, ଗୋରେଖ ପ୍ରସାଦେ-ଗୋରଖନାଥଙ୍କ ଦୟାରୁ, ଗୋରଖନାଥ ନାଥସଂପ୍ରଦାୟର ଜନୈକ ପ୍ରତିଷ୍ଠାତା ଓ ସିଦ୍ଧପୁରୁଷ । ଶାରଳା ମହାଭାରତରେ ଗୋରଖନାଥଙ୍କ ମାହାତ୍ମ୍ୟ ନାନା ସ୍ଥାନରେ କୀର୍ତ୍ତିତ ହୋଇଛି । ଫେଡ଼ଇ-ଫିଟିଇବା, ସୁନାଶିର-(ସୁନାସୀର)-ଇନ୍ଦ୍ର ।

## ଚତୁର୍ଥ ଛାନ୍ଦ

ଚଡ଼ାଉ—ଆଭରଣ, ଅଲଙ୍କାର; ସୁପାତି-ଶେଯ, ସୁତିଲ ସୁପାତି-ଶେଯ ପକାଇ ଶୋଇଲେ, ଆନୁଆନ-ଅନ୍ୟମନସ୍କ, ପରିବାସି-ଦାସୀ, (ଯଥା ପୋଇଲି ପରିବାସି) ପରମୁଣ୍ଡା ଦିବା-ଦେବତାଙ୍କ ସମ୍ମୁଖରେ ଗୁହାରିଆ ପଡ଼ିବା, ତଗରା ବା ତଗର-ହୂତ, ମୁରୁଠ-ସୁନ୍ଦର, ଶୋଭମାନ ବା ସଜାଇବା, ଦାଣ୍ଡେ-ଆଢାଢରେ, ରହୁବର-ରଥ, ଘୋଡ଼ା କ୍ଷୁରକରି ଯାନ୍ତି-ଘୋଡ଼ା ଦୌଡ଼ କରନ୍ତି, ବେଣ୍ଟକାର-ଶିକାରି, ଧୁଂଆଂ ଧୁଇଂ-ଧାଁ ଧପଡ଼ କରିବା, ପାଟଙ୍ଗ-ପତାକା, ନାଗ-ହସ୍ତୀ, ବାହୁଲଗି-ଘୋଡ଼ା ଚଢ଼ି, ପାଳିଦ୍ୱାର-ଭିତର ବେଢ଼ାର ଦ୍ୱାର, ନିଜସ୍ଥଳ ପକାଇ-ପ୍ରଣାମ କରିବା, ବନ୍ଦନା କରିବା ।

## ପଞ୍ଚମ ଛାନ୍ଦ

ଶିଶପର-ବୋଧହୁଏ ଶିବ ଘର, ଲଆଅ-ସଜାଅ, ଆଖଣ୍ଡଳ-ଇନ୍ଦ୍ର, ମୂଦୁଲୀ-ଅନ୍ତଃପୁରର ଦାସୀ, ବଧାଇ-ପାରିତୋଷିକ, ପୁରସ୍କାର, ହକାରି-ଡାକ, [ ଯଥା ହକରି ପଠାଇବା ] ବାଠଲ-ବାଟି ବା ପାତ୍ର, ଭରିଆ-ପୂର୍ଣ୍ଣକରି, ଆଚେଂବନ-ଆଚମନ, ବଢ଼ିଆ-ପାନଖିଲ, ଦୋପଟି-ବସ୍ତ୍ର ବିଶେଷ, ଦୋପଟି ସଜ-ଶାଢ଼ୀ ପିନ୍ଧି ଓ ଓଢ଼ଣି ଘୋଡ଼ହେ

## ଷଷ୍ଠ ଛାନ୍ଦ

ବଡ଼ ଅବକାଶ—ଏଠାରେ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରେ ବଡ଼ସିଂହାର ଭୋଗପରେ ଓ ସକାଳ ଧୂପ ପର୍ଯ୍ୟନ୍ତ ଯେଉଁ ଅବକାଶ ବା ବିଶ୍ରାମ ସମୟ ମିଳେ ତାହା ବଡ଼ ଅବକାଶ ଭାବରେ ବର୍ଣ୍ଣିତ । ଏହାର ଅନ୍ୟ ନାମ ପହଡ଼ । ପୁରୁଷୋତ୍ତମ ଦେବଙ୍କ ଜଗନ୍ନାଥ-ମନ୍ଦିର ଶିଳାଲିପିରେ ଏହି ପଦ ମିଳେ ଯଥା—

"ବୀରଶ୍ରୀ ଗଜପତି × × ପୁରୁଷୋତ୍ତମଦେବ ମହା-
ରାଜାଙ୍କର × × ୧୯ ଅଙ୍କ ଦାରୁଣୀ କଟକେ ଶ୍ରୀ ନଅର
ଗୋପାଳ ପ୍ରିୟ **ଜଗତୀର** ଦକ୍ଷିଣ ବେଢ଼ାରେ **ବଡ ଅବକାଶେ**"

ସୁଧର୍ମୀ-ଇନ୍ଦ୍ର, ନିରବାଣି-ନିର୍ମିକର, ଅପହୃତ-କାଗତେ,
କୋଇଲି ମାକଣୀ ବିବାହ ଦିବସର ପାହାନ୍ତିଅରେ କରିବା ସ୍ନାନ,
ସିଦ୍ଧୁଆ ଦୋଉଣି-ଘୋଡ଼ା ହୋଇଥିବା ଏକପ୍ରକାର ଶାଢ଼ୀ,
ଚାଟେଲି-ଅଳ୍ପ ସମୟରେ, ହିଟକୋଳି, ତମାଳି-ପରିହାସ, ଭୁଷାଯୁଅବସ୍ଥା-
ଗତଯୁକ୍ତ ବା ମୃତ (ପ୍ରାଣ ଛାଡ଼ିବା ଅବସ୍ଥା) ଅଣ୍ଡେଲଗ,- ପ୍ରଣାମ
ଗ୍ରହଣ ପାଇଁ ଅକ୍ଷମ, ଅର୍ଥାତ୍ ମୃତ। ଦୋବପାତନ୍ତ୍ର-କାନ୍ଦବାବାଳି
କରନ୍ତି, ଧୁନ୍ଦୁ-ହୁରନ୍ତ, ଲିଙ୍କୁପିବା-ଦେଖି ମୁଗ୍ଧ ହେବା,
ଭଲୁସିବା-ଫୁଲୁଉଠିବା, ପାଚିଲେ-ଜଉତ୍ସାହିତ, ଝୁଡାଇ-ଦୋଡାଇ
( ଯଥା ଝୁଡଣ ବେଣୀ ) ବେହାଦେଆ ଗୋଲକସ, ଦେଇ-ଭଉଣୀ,
ବାରବିଲାପୁଣି (ବାରବିଳାସିନୀ) ବେଶ୍ୟା, ଥାଟ-ସୈନ୍ୟ, ଟେସିଲ-
ପତାକା,

## ସପ୍ତମ ଛାନ୍ଦ

ସଂକ୍ଷୁ-ପକ୍ଷୀ, ରଇ-ଚିତା, କେତ-ପତାକା, ପନ୍ନାମା-ଲୁଗା,
କେତର-କୁମ୍ଭିତ କେକଟ, କ୍ଷାର-କ୍ଷାର, ଧାତକାରେ-ଝଟ ବା ଶୀଘ୍ର

## ଅଷ୍ଟମ ଛାନ୍ଦ

ତବେଦ-ସ୍ତବ୍ଧ, ଅସ୍ଥିର; ପ୍ରଲମ୍ବ-ସାଷ୍ଟାଙ୍ଗ ପ୍ରଣିପାତ,
ଆଲମ୍ବ-ତଳକୁ ଝୁଲୁଥିବା ଝୁମ୍ପା ଝାଲର ପ୍ରଭୃତି, ବାଲିଗଣ୍ଡି-
ଜଗନ୍ନାଥ ମନ୍ଦିର ଓ ଗୁଣ୍ଡିଚା ମନ୍ଦିର ମଧ୍ୟରେ ଥିବା ଦୁଇସହରର
ସ୍ଥାନ ବିଶେଷ-ଏହାକୁ ଏବେ ବଲଗଣ୍ଡି କହୁଛନ୍ତି ।

## ନବମ ଛାନ୍ଦ

ପୀତା-ଚୂଳ, ନନ୍ଦାବର୍ତ୍ତି-ବର୍ତ୍ତୁଳାକୃତ ପକ୍ୱାଗ୍ରହ, ଥୋପା-ଗୁଚ୍ଛି, ଝୁମ୍ପା-ପାଟଫୁଲ, ଥୋପା ବା ଗୁଚ୍ଛ; ଲଉଥିବେ-ପିନ୍ଧିଥିବେ, ଠାବ ଠାବେଣ-ସ୍ଥାନେ ସ୍ଥାନେ, ବାଳେଣିଆ-କର୍ଣ୍ଣଭୂଷା ବିଶେଷ, ଆଦେସ୍ୟ-ଅଳଙ୍କାର, ଦାସ୍ୟ-ଯୌତୁକାଦି ଦାନ, ଜସ ଜସ-ଯାହା ଯାହା, ପଡ଼-ଗୀତର ପଦନ୍ୟାସ ବିଶେଷ, ଗାୟେଣୀ-ଗାୟକ ବିନୋଇ-ବିନୟକର, ଓହାଡ଼-ଅନ୍ତଃଆଳ, ବାନ୍ଧ୍ୟ-ପବନରେ,

ସିମନ୍ତି-ସୀମନ୍ତର ଅଳଙ୍କାର ବିଶେଷ, ଚିତା ଅଳଙ୍କାର ବିଶେଷ, ସୁଗ-ଧେନ୍ଦୁ ( ସୁଗେଣୀ ଚନ୍ଦ୍ର ) ତାଟଙ୍କ-କର୍ଣ୍ଣଭୂଷଣ, କାପ; ଉରସ ଲାଗେଲା ଯୋଗୀ ଛନ୍ଦବିଶେଷ, ଅବତଂସ-କର୍ଣ୍ଣଭୂଷଣ, ଶିରୋଭୂଷଣ; ଦୁକୂଳ-ରେସମୀଲୁଗା, ପଟ୍ଟବସ୍ତ୍ର; କୁବଳୟ-ନୀଳପଦ୍ମ, ନୀଳୋତ୍ପଳ; ବାଦ, ମୁଦ, ପ୍ରଭୃତି ହାତର ଅଳଙ୍କାର ଓ ନେପୁର (ନୂପୁର) ପାହୁଡ଼ ( ଗୋଡ଼ଖଡ଼ୁ ) ପ୍ରଭୃତି ଗୋଡ଼ର ଅଳଙ୍କାର; ଫୁଲ ଆଦ୍ୟେ-ଶ୍ରୀଜଗନ୍ନାଥଙ୍କ ଦେହରେ ଲଗି ହେଉଥିବା ଫୁଲରେ ତିଆରି ବିବିଧ ଅଳଙ୍କାର ।

## ଦଶମ ଛାନ୍ଦ

ନିମୂର୍ଣ୍ଣି ଗନ୍ଧ-ଏକତ୍ରକାର ସୁସଜ୍ଜିତ ପୁଷ୍ପ ଗୁଚ୍ଛ, (ନିମୁର୍ଣ୍ଣିଗନ୍ଧ ମୂର୍ଚ୍ଛେ ଦେଇ, କହଇ କୃଷ୍ଣ ନାହିଁ ନାହିଁ । ଭାଗବତ ଦଶମସ୍କନ୍ଧ) ଚତୁସମ ବା ଚତୁସମ-ଚନ୍ଦନ, ଅଗୁରୁ, କସ୍ତୁରୀ, କୁଙ୍କୁମ ଏହି ଚାରି ଦ୍ରବ୍ୟର ଲେପ । ଲଳନ୍ତ-ଝୁଲନ୍ତ, କେନେଟ ବୋଧ ହୁଏ କର୍ଣ୍ଣିକାର (ଢେଙ୍କ) କର୍ଣ୍ଣଭୂଷଣ, ରେଖ-ଧାଡ଼ି, ଭାଟରି ବା ଭାଟ-ସ୍ତୁତିପାଠକ, ଲୁଣ ଚଉଁରୀ [ଲବଣ ଚଉଁରୀ ଢେଙ୍କ] ବେଦୀକୁ ଯିବା ପୂର୍ବରୁ କନ୍ୟା ବନ୍ଦାପନା; ଧନ୍ଦୋଳ-କୋଳାହଳ, ଗହଳ ଧନ୍ଦୋଳ-

ଗଢ଼ଲ ଚଢ଼ଲ, ପଞ୍ଚଗରାସି [ପଞ୍ଚଗ୍ରାସ] ବିବାହ ସମୟରେ ବର ଓ କନ୍ୟାଙ୍କ ଏକତ୍ର ଭୋଜନ । ଛଡ଼ରସ [ଷଟ୍‌ରସ] କଟୁ, ତିକ୍ତ, ଅମ୍ଳ, କଷାୟ, ମିଷ୍ଟ, ଲବଣ; ଅଗରନ୍ତି-ଅଗୁରୁ, ଡଡ଼ପ-ଜଉମବସ୍ତ୍ର, ପଇଲମ-ଡେଲ୍ଲଣୀ, ପାନବିଶେଷ, ତାଟିଆ-ଗିନା, ପାଏଡ଼ା-ଦେବତା ବା ରାଜା ବିଜେ ସମୟରେ ବାଟରେ ବିଛା ହୋଇଥିବା ଲୁଗା, ପାନୁଆନ-ବିଭିନ୍ନ ।

## ଏକାଦଶ ଛାନ୍ଦ

ରେଖ ରେଖ-ଧାଡ଼ ଧାଡ଼, ପନ୍ତି ପନ୍ତି [ ପଙ୍‌କ୍ତି ଶବ୍ଦଜ ] ଶ୍ରେଣୀ, ପୀଢ଼ା-ବୃଳ, ଅଲଟ-ଏକ ପ୍ରକାର ବଡ଼ ବ୍ୟଜନ, ସୀମନ୍ତିନୀ [ସୀମନ୍ତିନୀ] ନାରୀ, ସୋଧ ସାରି-ସମସ୍ତଙ୍କୁ ବାହାର କରି ନିର୍ଜନ କରିବା, ପନର ସୁବାସିତ ଜଳ, ମହାରେଣ-କଟିରେ, ହୋଡ଼-ବାଜମାରିବା, ଦ୍ୟୁଧାନ୍ତି-ଏଥର, ଛନ୍ଦ୍ରମ-କପଟ, ବକ ବକ-ବକର ବକର, ସାରଙ୍ଗ-ହରିଣ, ଜଳଜାସନୀ-ଲକ୍ଷ୍ମୀ, ପଶୁପାଳକ-ଶ୍ରୀଜଗନ୍ନାଥ ଓ ଶ୍ରୀଲକ୍ଷ୍ମୀଙ୍କ ସେବକ ବିଶେଷ, ଏମାନେ ଦର୍ପଣ ଦେଖାଇ ଶ୍ରୀମୁଖ ପଖାଳନ, ଦାନ୍ତକାଠି ଲଗି, ଆଚମନ, ଧୂପ ଦୀପ ସହିତ ଶ୍ରୀମୁଣ୍ଡିରେ ପଞ୍ଚାମୃତ ସ୍ନାନ, ସୁଗନ୍ଧ ଅଏଁଳା ଲଗି ଇତ୍ୟାଦି କରନ୍ତି [ପୂଃ ଓ. ଭ କୋ]

କର୍ଣ୍ଣାଟ [ ବୋଧ ହୁଏ କର୍ଣ୍ଣିକା ] କର୍ଣ୍ଣଭୂଷଣ, ତରାଇ-ନାଉରିଆ, କେଳୁଆଳ-ଆହ୍ଲାଦ ।

## ଦ୍ୱାଦଶ ଛାନ୍ଦ

ଘାଘର-ଘାଏଲ, ନିପ୍ରେକ; ପିଘଢ଼ଇ-ଆଖିର ପଲକ ପକାଇବା, ସଞ୍ଚାନ୍ତି-ସାମଗ୍ରୀ ବା ଉପକରଣ ସମୂହ ।

## ତ୍ରୟୋଦଶ ଛାନ୍ଦ

ଧାଙ୍କଠି-ବାଜୁବନ୍ଧ, ପାହୁଡ଼-ଗୋଡ଼ ବେଢ଼ୁ, ବୋଦାଳି ପାଉଇ ଉଚ୍ଚସ୍ୱରରେ କାନ୍ଦବା, ପହଣ୍ଡ ମଣୋଇ-ରଜା ବା ଦେବତାଙ୍କ ପହଣ୍ଡି ବିଜେ ବା ଯିବା ସମୟରେ ଜଣେ ସେବକ ଆଗେ ଆଗେ ରୁଳ ବାଠ କଢାଇବା, ବେଷ ସୀମନ୍ତିନୀ-ନାଗକନ୍ୟା, ଲେହ-ଲହା, ମାଳେଯୀ (ମାଳେଯୀବର) ମଲପଦ୍ମ, ନାଭିଉଲ-ଉଡ଼ଲ, ଢାଳିଲ; ମୂର୍ଦ୍ଧନ-ମୂର୍ଦ୍ଧପରେ, କନକ ସ୍ରାହ୍ମାନ [କନକ ସ୍ନାନ]- ରଜାମାନେ ସିଂହ ସନରେ ବସିବା ପୂର୍ବରୁ ମନ୍ତୋଚ୍ଚାରଣ ପୂର୍ବକ ଯେଉଁ ସ୍ନାନ କରନ୍ତି, ଏହି ସ୍ନାନ କନକ ଘଟରେ ଥିବା ଜଳଦ୍ୱାରା ଯଥାବିଧି ସମାହିତ ହୁଏ । ଜୁର-ଲଟପାଟ୍ ।

